# ଈଶ୍ୱର ହେବାକୁ ଚାହେଁ

କୁଳମଣି ଜେନା

ପ୍ରକାଶକ :



ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ
ଭୁବନେଶ୍ୱର-୭୫୧୦୧୬

# ଈଶ୍ୱର ହେବାକୁ ଚାହେଁ

(କବିତା ସଂକଳନ)

କବି: କୁଳମଣି ଜେନା

*ପ୍ରକାଶକ :*

**ବସନ୍ତ ମାଝି**
ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ
ଏମ୍.ଆଇ.ଜି.(୧)୧୯/୨
ହାଉସିଂବୋର୍ଡ କଲୋନୀ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର-୭୫୧୦୧୬

*ପ୍ରଥମ ସଂସ୍କରଣ :* ୨୦୨୦

*ମୁଦ୍ରଣ :*
**ଜଗନ୍ନାଥ ଗ୍ରାଫିକ୍ସ**
୩୯୩, ସହିଦନଗର, ଭୁବନେଶ୍ୱର
ଫୋନ୍-୯୪୩୭୧୧୯୯୧୧

ମୂଲ୍ୟ - ଟ. ୧୦୦/-

**ISWAR HEBAKU CHANHE**

(Collection of Poems)

*Poet :*
**Kulamani Jena**

*Publisher :*
**Basanta Majhi**
Chandrasekharpur
Sahitya Sansad
MIG-(1)19/2,
Chandrasekharpur
H.B Colony, Bhubaneswar

1st Edition : 2020

*Printing :*
**Jagannath Graphics**
393, Sahid Nagar,
Bhubaneswar
Ph. : 9437119911

Price : ₹ 100/-

# ଉତ୍ସର୍ଗ

ମୋ ଜୀବନର ସୁଖ ଦୁଃଖ  ସହ ଜଡ଼ିତ ଦୀର୍ଘକାଳର
ପରୀକ୍ଷିତ ବନ୍ଧୁ ପରମ ସୁହୃଦ୍
ସାଥୀ ବସନ୍ତ ମାଝି
ଙ୍କର କରକମଳେଷୁ ।

– କବି

# ମୁଖବନ୍ଧ

ସାହିତ୍ୟ ଯଦିଓ ମୋର ସୃଜନଶୀଳ ବ୍ୟକ୍ତିତ୍ୱର ମୂଳ ପ୍ରେରଣା ଥିଲା - ଜୀବନ ସଂପର୍କରେ ଶ୍ରେଷ୍ଠ ଅନୁଭୂତି ହାସଲ କରିବା ପାଇଁ ଇତିହାସ ଓ ରାଜନୀତି ସଂପର୍କିତ ଜ୍ଞାନ ବିଶେଷ କରି ରାଜନୈତିକ ଅର୍ଥଶାସ୍ତ୍ର ପ୍ରତି ମୁଁ ବିଶେଷ ଭାବରେ ଆକୃଷ୍ଟ ହୋଇଥିଲି। ଏ କ୍ଷେତ୍ରରେ ମାର୍କ୍ସବାଦ ମୋତେ ବାଟ କଢ଼ାଇ ନେଇଥିଲା। ଅଥଚ ପାରମ୍ପାରିକ ବାମପନ୍ଥୀ ରାସ୍ତା ଦେଇ ମୁଁ ଯିବାକୁ ଇଚ୍ଛା କରିନଥିଲି। ମୁଁ ସାମ୍ୟବାଦ ପ୍ରତି ଆକୃଷ୍ଟ ହୋଇଥିଲି - ଯେଉଁ ସାମ୍ୟବାଦ ଏକ ବିଶ୍ୱ ବ୍ୟବସ୍ଥା ରୂପେ ମୁଣ୍ଡଟେକି ଉଠୁବୋଲି ମୁଁ ଚାହୁଁଥିଲି। ସେଥିପାଇଁ ମୁଁ ମାର୍କ୍ସ, ପ୍ରୁଧୋଁ, ଲୁକସେମବର୍ଗ, ଲେନିନ୍, ଗ୍ରାମ୍‌ସୀ, ଆଲଥୁସିୟସ, ସାର୍ତ୍ରେ, ନେଗେରୀ ବାଟଦେଇ କେତେ କଣ ପୋଥି ଘାଣ୍ଟିଛି; ଗାନ୍ଧିଜୀଙ୍କର ବହୁଲେଖା ପଢ଼ିଛି। କ୍ୟୁବାର ସାହସୀ ବିପ୍ଳବ, ଭେନେଜୁଆଲ ରିଭୋଲ୍ୟୁସନ, ଜାପାତିସ୍ତା ଆନ୍ଦୋଳନ, ଅକୁପାଏ ୱାଲଷ୍ଟ୍ରିଟ ଆନ୍ଦୋଳନ, ସର୍ବୋପରି ପ୍ୟାରି କମ୍ୟୁନ, ସରୋକିନ କମ୍ୟୁନ, ୱାର୍କ୍ସ ଅପୋଜିସନ ଆନ୍ଦୋଳନ ଦ୍ୱାରା ଅନୁପ୍ରେରିତ ହୋଇଛି। ହାଲିହାଲି ଏମ୍ପାୟାର ମଲଟିଚ୍ୟୁଡ ବା ୧ ଭାଗ ଓ ୯୯ ଭାଗର ଦ୍ୱନ୍ଦ୍ୱକୁ ଦେଖୁଛି ଓ ନେଗେରୀଙ୍କ ନୂତନ ବ୍ୟାଖ୍ୟାକୁ ତାରିଫ କରୁଛି।

ମୋଟାମୋଟି ଭାବରେ ଦ୍ରୁତ ପ୍ରଯୁକ୍ତିକରଣ ଜରିଆରେ ସମ୍ପ୍ରତି ପୁଂଜି ବିଜ୍ଞାନର ତଣ୍ଟି ଚିପିଚାଲିଛି। ପୃଥିବୀ ଧ୍ୱଂସାଭିମୁଖୀ ହେଉଛି। ନୂତନ ପ୍ରଜନ୍ମ ମାର୍କ୍ସ ଓ ଗାନ୍ଧିଙ୍କ ଭଳି ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହେଉନାହାଁନ୍ତି। ମଣିଷ ହୋମ ସାପିଏନ୍ସ ସାପିଏନ୍ସ ସଦ୍‌ଗୁଣ ପରିହାର କରି ହୋମ ଇକୋନୋମିକସ ଅର୍ଥାତ୍ ଅର୍ଥସର୍ବସ୍ୱ ଜୀବନ ଯାପନ କରିବାକୁ ପସନ୍ଦ କରୁଛି। ଏ ପରିସ୍ଥିତିରେ ମାର୍କ୍ସଙ୍କର ସ୍ୱପ୍ନ, ପ୍ରକୃତି ମାନବୀୟ ହେବ ଓ ମଣିଷ ପ୍ରାକୃତିକ ହେବ କିପରି ? ମାନବତାବାଦକୁ ଧ୍ୱଂସକରିବା ଓ ବିଜ୍ଞାନର ତଣ୍ଟି ଚିପିବା କ୍ଷେତ୍ରରେ ପୁଂଜି ଓ ପ୍ରଯୁକ୍ତିର ଅନୈତିକ ଯୋଡିକୁ ପରାସ୍ତ କରାଯିବ କିପରି ? ଏଥିପାଇଁ ସମାଜ ପରିବର୍ତ୍ତନର ପୁରୁଣା ପଦ୍ଧତି ଓ ବ୍ୟାଖ୍ୟାକୁ ଛାଡ଼ିବାକୁ ପଡ଼ିବ। ବିଜ୍ଞାନର ପୁନଃପ୍ରତିଷ୍ଠା କରାଇବାକୁ ହେବ।

ଈଶ୍ୱରହୀନ ପୃଥିବୀରେ ମଣିଷକୁ ସ୍ୱ-ଆରୋପିତ ଈଶ୍ୱରୀୟ ସଦ୍‌ଗୁଣରେ ଭୂଷିତ ହେବାକୁ ପଡ଼ିବ। କେବଳ ଜଣେ ଚରମ ନାସ୍ତିକ ହିଁ ଈଶ୍ୱରଙ୍କଠାରେ ନିଜ ଦ୍ୱାରା ଆରୋପିତ ସଦ୍‌ଗୁଣକୁ ନିଜ ମଧ୍ୟରେ ବିକଶିତ କରାଇପାରିବ। ଅର୍ଥାତ୍ ଆଧିଭୌତିକତାକୁ ବିଜ୍ଞାନ ବିକାଶ କାମରେ ଲଗାଇ ପାରିବ। ଆଜି ପୁଂଜି ବିଜ୍ଞାନକୁ ଗିଳି ସାରିଛି, ଏ କ୍ଷେତ୍ରରେ ନୂତନ ବିଜ୍ଞାନ ଆଧିଭୌତିକତାକୁ ଗ୍ରାସ କରୁ ଓ  ପୁଂଜି ତଥା ପ୍ରଯୁକ୍ତିର ତଣ୍ଟି ଚିପୁ। ପୁନଶ୍ଚ ପୁଂଜି ଓ ପ୍ରଯୁକ୍ତିର ଅନୈତିକ ଯୋଡିକୁ ଭାଙ୍ଗୁ। ଈଶ୍ୱର ହେବାକୁ ଚାହୁଁଥିବା ବ୍ୟକ୍ତି ନୂତନ ବିଜ୍ଞାନର ଆବିଷ୍କର୍ତ୍ତା ସାଜୁ।

ସମାଜ ପରିବର୍ତ୍ତନରେ ବିଶ୍ୱାସ କରୁଥିବା ମଣିଷଟି ନୂତନ ପ୍ରଜନ୍ମକୁ ପ୍ରଯୁକ୍ତି ବଦଳରେ ବିଜ୍ଞାନ ପ୍ରତି ଆକୃଷ୍ଟ କରାଉ। ପ୍ରଯୁକ୍ତି ପୁଂଜିର ସମର୍ଥକ ଓ ଧ୍ୱଂସର ବାହକ - ପ୍ରତିକ୍ରିୟାଶୀଳ। ବିଜ୍ଞାନର ଲକ୍ଷ୍ୟ ପରିବର୍ତ୍ତନ ଓ ବିପ୍ଳବ, ସମସ୍ତ ପ୍ରତିକୂଳତା ସତ୍ତ୍ୱେ ପରିବର୍ତ୍ତନ ଓ ବିପ୍ଳବର ବିଜ୍ଞାନର ପ୍ରତିଷ୍ଠା ଆମ ପାଇଁ ଏକ ଆହ୍ୱାନ। 'ଈଶ୍ୱର ହେବାକୁ ଚାହେଁ' ପୁସ୍ତକ ପ୍ରକାଶନ ଅବସରରେ ଆମେ ଏହି ଆହ୍ୱାନକୁ ଗ୍ରହଣ କରିବା ଦରକାର।

ତା ୨୦-୯-୨୦ରିଖ

**କୁଳମଣି ଜେନା**



# ସୂଚୀପତ୍ର



xxx

# ମଶାଣି

ଯେତେ ଶକ୍ତ ହେଲେ ବି ମଣିଷ
ମଶାଣି ସୂଚାଇ ଦିଏ ଜୀବନର ଅର୍ଥ।

ସ୍ନେହ ପ୍ରେମ ଆବେଗର ମାନେ
ଯେମିତି ସୂଚାଇ ଦିଏ
ଜୀବନର ଅଭାବ ମୟତା
ସେମିତି ସୂଚାଇ ଦିଏ ମଶାଣିର ଚିତା
ସ୍ନେହ, ପ୍ରେମ, ଆବେଗ ଓ
ହତାଶାର ସୁଅ
ସବୁକୁ କୋଳାଇ ନେବ
ମଶାଣିର ସାମୁଦ୍ରିକ ଦେହ।

ମୁଁ କିନ୍ତୁ ମଶାଣିକୁ ଭୟ କରେ ନାହିଁ
ଯେତେ ଶକ୍ତ ହେଲେ ମଧ୍ୟ ଯମ ଦଣ୍ଡ ଡୋରି
ବେଢ଼ି ପାରିବିନି ମୋର ବେକ ଆଉ ଗୋଡ଼
କାରଣ ମୋ ବିବେକର ଶକ୍ତ ଶକ୍ତ ହାଡ଼
ଭାଙ୍ଗି ଚୁରମାର କରିଦେବ ଯମର ଆଳୟ
ଯେତେ ସବୁ ଅହଂକାର ମୃତ୍ୟୁ ଦେବତାର

ଶେଷ ହେବ ଦିନେ ।
ଶେଷ ହେବ ଯେଣୁ
ମୋ ଅମୂଲ୍ୟ ସାଧନାର ସଶକ୍ତ ହୃଦୟ
ଚୁମାଟିଏ ହୋଇ
କୃଷ୍ଣରୋଗୀ ଘା' ମଧ୍ୟେ ଫୁଟି ଉଠିପାରେ।

ଜୀବନକୁ ଭଲ ପାଏ ଯେଣୁ
ହୃଦୟକୁ ଖୋଲାକରି ଦେଇଅଛି ଭାଇ
ପାପବୋଧ ନାହିଁ ମୋ'ଠାରେ
ଏହା ହିଁ ତ ଜୀବନର ଶ୍ରେଷ୍ଠ ସଫଳତା
ଏଣୁ ମୁଁ ଡରେନା ଭାଇ ମଶାଣିର ଚିତା ।

❑❑❑

# ଜୀବନ ସଂପର୍କିତ ଏକ କବିତା

ଆକାଶର ଘନଘନ
ବତାସର ସନସନ
ଧ୍ୱନି ମୋ ଆଉଟି ଦିଏ
ହୃଦୟର ଅଭିମାନ ।
ଜୀବନେ ଯେତେ ବା ଝଡ଼
ବହିଗଲା ସବୁ ଆଜି
ସଂଗ୍ରାମର ଅଗ୍ରଭାଗେ
ଜୀବନର ଅନୁରାଗୀ
ହୋଇ ସେ ପାଏନା କିନ୍ତୁ
ଜୀବନର ପରିଚୟ
ଜୀବନ ଜାଣିବା କଷ୍ଟ
ଜୀବନ କି ଅଭିନୟ ?
ଶିଶିରର ଶିରିଶିରି
ପାତ ହୁଏ ଆକାଶରୁ
ଜୀବନର ମଇଦାନେ
ଜୀବନ ଯେ ଦିଶେ ଚାରୁ
ହଠାତ୍ ବାଦଲ ମେଳେ
ଘୋଟିଯାଏ ଘନଛାୟା
ବୁଝି ହୁଏ ନାହିଁ କିଛି
ଜୀବନ କି ସତେ ମାୟା ?

ଦିବସର ଅଗ୍ରଭାଗେ
ଦରଦର ପ୍ରତିଲିପି
ଆଙ୍କି ଦେଲେ ଅଦ୍‌ଭୂତ
ଜୀବନକୁ ଯାଏ ଦେଖି
ଯେଉଁଠି ଦେଖିବ ଖାଲି
ଛଳନାର ଛୁରୀଅନା
ହତାଶାର ଝାଉଁବଣେ
ହୋଇଯାଏ ଆନମନା ।
ରିକ୍ତ ମୋ ମନ ଯେଣୁ
ପାରେନା ମୁଁ ପଥ ଚାଲି
ଭାବି ମୁଁ ପାରେନା କିଛି
ଜୀବନ କି ମରୁବାଲି ?
ମରୁଝର ସଂଧାନେ
ତଥାପି ମୋ ପଥ ଖୋଜା
ଶେଷ ହୁଏ ନାହିଁ ଯେଣୁ
ପାଏନା ଜୀବନ ରାଜା
ନ ପାଇଲା ଯାଏ ତାକୁ
ବୁଲୁଥିବି ଖୋଜୁଥିବି
ନଧଇଲା ଯାଏ ତାକୁ
ନାଚୁଥିବି କୁଦୁଥିବି ।
ଅପେକ୍ଷାର ଆକୁଆଳେ
ଜୀବନକୁ ଭଲପାଏ
ଅପେକ୍ଷାର ଆକୁଆଳେ
ଜୀବନର ଗୀତଗାଏ ।
ସଂଘର୍ଷ ଓ ସଂଗ୍ରାମର
କ୍ଷତ ବହି ଅଗ୍ରଭାଗେ
ଜୀବନ ଖୋଜୁଛି ମୁହିଁ
ଜୀବନର ଅନୁରାଗେ ।

ସ୍ନେହ ପ୍ରେମ ଆବେଗ ଓ
ଦରଦର ଅନୁଭୂତି
ଭାବି ମୁଁ ନ ଥିଲି ଆହା
ବିପ୍ଳବର ଜଡ଼ିବୁଟି ।
ବିପ୍ଳବ ନୁହଁଇ ସାଥୀ
ଶତ୍ରୁ ଦେହେ ଶରଗଣା
ବିପ୍ଳବ ଆଉଁସି ନେବା
ଅନୁଭୂତି ପରି ଜଣା
ନଥିଲା ଯେହେତୁ ମୁଇଁ
ବିପ୍ଳବର ପରିଚୟ
ପାଇ ମୁଁ ନଥିଲି ମୋତେ
ଜୀବନର ଅଭିନୟ
ମୁଗ୍ଧ କଲା ଦେଇ ସେଇ
ଅନୁଭୂତି ଧୂଳିକଣା
ଜୀବନ ମାଗୁଛି ମୁଁ ଯେ
ଜୀବନର ବାଟବଣା
ହେବି ନାହିଁ ଆଉ ଦିନେ
ଜୀବନର ତ୍ରିଛକିରେ
ଜୀବନ ଖୋଜୁଛି ଯେଣୁ
ଜୀବନ ପରିଧିରେ ।
ବୁଲି ବୁଲି ବଲଗା ପରି
ହରିତ ସବୁଜ ବଣେ
ଶରାହତ ହେବି ନାହିଁ
ଭାବେ ମୁଇଁ ମନେ ମନେ ।
ଜୀବନର ଘୋର ଶତ୍ରୁ
ପୃଥିବୀର ବ୍ୟାଧ ଦଳ
ଜୀବନର ପରିଚୟ
ମାଗ ସେ ଜୀବନାନଳ

ପୋଡ଼ି ଯାଉ ଯେତେ ସବୁ
ଶୋଷଣର ଇଚ୍ଛାମାନ
ହିଂସା, ଦ୍ୱେଷ, ଅସୂହାର
ଭାଗୀଦାର ଧନୀଜନ ।
ଧନ ଲୋଭେ ତମେ ଭାଇ
ଧରା ସରା ମଣ ଯହିଁ
ହାତ ପାହାଂତାନ୍ତରେ ସବୁ
ରଖିବାକୁ ଭାବ ତହିଁ
ଜାଣ ନାହିଁ ଜାଣ ନାହିଁ
ତମେ କିନ୍ତୁ ଜାଣ ନାହିଁ
ବସ୍ତୁର ଜଗତ ଠାରୁ
ଭାବର ଜଗତ ବଡ଼
ଉଇ ହୁଂକା ହୋଇପାରେ
ନୁହଁ ବାଲମିକ ଜଡ ।
ବାଲମିକ ବସ୍ତୁ ନୁହଁ
ଚେତନାର ଉଇ ହୁଂକା
କ୍ଷୟ ହୁଏ ନାହିଁ ଯାହା
ଯୁଗଯୁଗ ପାଇଁ ଏକା ।

❑❑❑

## ବସ୍ତିଭଙ୍ଗା

ବସ୍ତିଭଙ୍ଗା ଚାଲିଛି
ବୁଲଡୋଜରରେ ପେଶି ହୋଇ
ଯାଉଛି ଜୀବନ;
ଇଏ ବାବୁ ଭେୟାଂକ ସହର
ଏଠି ଗରିବର ନାହିଁ ସ୍ଥାନ।
ବନ୍ୟା ବାତ୍ୟା ମରୁଡ଼ିର
ଦାଉ ସହି ନପାରି
ପଳାଇ ଆସିଥିଲେ ସହରକୁ
ସହର କହୁଛି...
ଫେରିଯାଅ ଗାଁକୁ ।
ବସ୍ତିଭଙ୍ଗା ଚାଲିଛି
ଆକାଶର ଛାତ ତଳେ
ଆଶ୍ରୟ ନେଇଛନ୍ତି
ଉଦ୍‌ବାସ୍ତୁ ଗଣ !
ନେତାଙ୍କ ଗୁଣ କୀର୍ତ୍ତନ, ହରି ଭଜନ
ସବୁକିଛି ସରିଛି;
ନା ଶୁଣିଲେ ନେତା
ନା' ଶୁଣିଲେ ଈଶ୍ୱର
ନିଜେ ବି ସଂଘର୍ଷ କଲେ
ଫଳ ମିଳିଲା ଲାଠିମାଡ।

ସହରରେ ହଇଚ୍ଚା ହେଲା
ଜଂଡିସ ବ୍ୟାପିଲା
ବସ୍ତିବାସିନ୍ଦା ଦାୟୀ;
ଲୋକ ଧାରଣାରେ
ବସ୍ତି ଅଂଚଳ
ଚୋର ଡକାୟତଙ୍କର ଆଡ୍‌ଡାସ୍ଥଳ;
ଯାବତୀୟ ଖୁନ୍ ଖରାବି
ନରହତ୍ୟା ଧର୍ଷଣ
ବସ୍ତି ବାସିନ୍ଦା କାମ ।
ଜଜ୍ ସାହେବଙ୍କ ହୁକୁମ
ଜିଲ୍ଲା ପ୍ରଶାସକଙ୍କ ନିର୍ଦ୍ଦେଶ
ବସ୍ତି ବାସିନ୍ଦାମାନେ ସହରରୁ
ନିକଳି ଯାଅ
ନତୁବା ବିକ୍ରୀ ହେଉଛି ଜମି
କିଣି ନିଅ
ଭଡ଼ାରେ ମିଳୁଛି ଘର
ଭଡ଼ାଦେଇ ରୁହ;
ପକେଟରେ ପଇସା ନାହିଁ ତ
ଗାଁକୁ ପଳାଅ ।
ବସ୍ତି ଭଂଗା ଚାଲିଛି
ବୁଲ୍‌ଡୋଜର୍‌ରେ ପେଷି ହୋଇ
ଯାଉଛି ଜୀବନ;
କଣ ପାଇଁ ଏ ବସ୍ତିଭଙ୍ଗା
ଜୀବନର ମାନେ କ'ଣ
କେହି ପ୍ରଶ୍ନ କରୁନି ।
କୁଆଡ଼େ ଯିବେ ବିଚାରାମାନେ
ନର୍ଦ୍ଦମା ସଫା କରୁଥିବା,
ଜୋତା ସିଲେଇ କରୁଥିବା

ଛତା ରପ୍ତୁ କରୁଥିବା ମଣିଷମାନେ
ଯିବେ କୁଆଡ଼େ ?
ମିସ୍ତ୍ରୀ, ମୂଲିଆ, ଡାକବାଲା, ହକର,
ପିଅନ, ମାଳି, ଗ୍ୟାଂଗକୁଲି, ଚାକର
ଚୂଳକଟା ବାରିକ, ସେଲସମ୍ୟାନ,
ଡ୍ରାଇଭର, ଉଠା ଦୋକାନୀ
ଏମାନେ କେଉଁଆଡ଼େ ଯିବେ ?
ଏମାନଙ୍କ ବିନା ସହରଟା କ'ଣ
ଚାଲିପାରେ ?
ଏଠି କ'ଣ ଗଢ଼ା ହେବନି ଇମାରତ
ତିଆରି ହେବିନି ରାସ୍ତା
ସଫା ହେବନି ନର୍ଦ୍ଦମା
କଟା ହେବନି ଚୂଳ
କାହାର କ'ଣ ଦର୍କାର ହେବନି ସେବା ?
ଦାରିଦ୍ର୍ୟର ଜନ୍ମଦାତା ପିତା ନେତାମାନେ
ବେକାରିର ଜନ୍ମଦାତା ପିତା ନେତାମାନେ
ତମେ କାହା ଉପରେ ଦାଉ ସାଧୁଛ
ଯାହାକୁ ତମେ ଯୁଗ ଯୁଗ ଧରି
ଶୋଷଣ କରିଛ
ଯେଉଁମାନଙ୍କୁ ତୁମେ ଗାଁରୁ
ସହରକୁ ଓ ସହରରୁ
ଗାଁକୁ ତଡୁଛ
ସେମାନେ କଣ ତମର ଶତ୍ରୁ ?
ସବୁର କର
କିଛି ସମୟ ପାଇଁ ବନ୍ଦ ହେଉ
ବୁଲଡୋଜର
ହାଇକୋର୍ଟ ନୁହଁ ସୁପ୍ରିମକୋର୍ଟ ନୁହଁ
ଗଣ ଅଦାଲତରେ ହେଉ ବିଚାର

ଏ ସହରଟା କାହାର
ବିପୁଳ ବସ୍ତି ବାସିନ୍ଦାଙ୍କର ନା
ମୁଷ୍ଟିମେୟ ଧନୀଙ୍କର ?
କିଏ ଏ ସହର ଗଢ଼ିଛି ଓ କିଏ
ଏ ସହରକୁ ଲୁଟ୍ କରୁଛି
ଗରିବ ବସ୍ତି ବାସିନ୍ଦା ନାଁ
ଦୋମୁହାଁ ମଧ୍ୟବିତ୍ତ
ଛୋଟ ବଡ଼ ନେତା ଅଫିସର ଶାସକ ଶୋଷକ ?
ପ୍ରଥମେ ଏହାର ହୋଇଯାଉ ବିଚାର
ତା' ପରେ ବସ୍ତିଭଙ୍ଗା ଚାଲିବ ଅଥବା
ଉଦ୍‌ବୃତ୍ତ ଅର୍ଥ ଉପାର୍ଜ୍ଜନକାରୀ
ଓ ବିପୁଳ କଳାଟଙ୍କାର
ଅଧିକାରୀମାନଙ୍କ
ମଖମଲି ପ୍ରାସାଦ ଆଡ଼କୁ
ବୁଲ୍‌ଡୋଜର ମୁହାଇଁ ଯିବ କି ନାହିଁ
ସମୟ କହିବ।

❑❑❑

# ସମୟ ବଦଳି ଯାଇଛି

ସମୟ ବଦଳି ଯାଇଛି
ମହୁମାଛିମାନେ ଏବେ ମଶା ପାଲଟି ଯାଇଛନ୍ତି
ସେମାନେ ମଧୁ ସଂଗ୍ରହ ପରିବର୍ତ୍ତେ ରକ୍ତ ଅଣ୍ଡାଳୁଛନ୍ତି
ଶୃଗାଳ ମାନେ ଏବେ ମଣିଷ ମାନଙ୍କର ରାଜା
ମଣିଷ ସମାଜରେ ଚାଲିଲି ପଶୁର ରାଜୁତି ।
ସମୟ ବଦଳି ଯାଇଛି
ଫସଲ କିଆରୀରେ ଏବେ ପଙ୍ଗପାଳ ବଦଳରେ
ମଣିଷଙ୍କର ଭିଡ଼
ପଡ଼ିଆରେ ଗୋରୁ ଚରୁ ନାହାଁନ୍ତି
ମଣିଷ ଚରୁଛନ୍ତି;
ଜଙ୍ଗଲ ପଶୁପକ୍ଷୀ ବିହୀନ
ବୃକ୍ଷଲତା ହୀନ
ଜଙ୍ଗଲରେ ଏବେ ମଣିଷଙ୍କର କୋଳାହଳ ।
ନାରୀମାନେ ଏଠି ମା ନୁହଁ ଲାଲିମା
ଓଠର ସବୁଜିମା
ମାଂସର କାଳିମା ।
ମଗଜରେ ଏବେ ସତ୍ୟ ପରିବର୍ତ୍ତେ ଶଇତାନୀ
ହୃଦୟରେ ସ୍ୱାର୍ଥପରତା
ବିବେକ ଶୁଦ୍ଧ ହିଂସା ।

ଶିଶୁର ମୁହଁରେ ଏବେ ଦରୋଟି ହସ ପରିବର୍ତ୍ତେ
ସ୍ମାର୍ଟ ନେସ
ପକ୍ଷୀର ନୀଡ଼ଗୁଡ଼ିକ ବନ୍ଦୀଶାଳା
ବନଲତା ସେନ୍‌ର ଆଖି ପିଶାଚୀର ଆଖି ।
ସମୟ ବଦଳି ଯାଇଛି
ବଦଳି ଯାଇଥିବା ସମୟକୁ
ବଙ୍କା ହୋଇ ଛିଡା ହୋଇଥିବା ମଣିଷମାନେ
ବିଗୁଲ ବଜାଇ ସ୍ୱାଗତ ଜଣାଉଛନ୍ତି
ବାତାବରଣରେ ଏବେ ବିଶ୍ୱାସହୀନତା
ଖୋଳପା ଓ କଂକାଳମାନେ କଳେବର ମଣ୍ଡିତ
ପୃଥିବୀରେ ଏବେ ଘୃଣାର ସଂପର୍କ
ସଂପର୍କ ମାନେ ଇ ଘୃଣା
ଘୃଣାର ବିନିମୟ ।
ପ୍ରକୃତି କୋଳରେ ଜନ୍ମ ନେଇଥିବା ମଣିଷ ଆଜି
ବଜାରରୁ ଫଳ ମୂଳ ସଂଗ୍ରହ କରି ଚଳୁଛି
ବଜାର ମହଂଗା ପଡ଼ିଲେ
ରୋଗ, ଶୋକ ଦାରିଦ୍ର୍ୟରେ ଷଡୁଛି ମରୁଛି
ଘୃଣା ଓ ସଇତାନୀରେ ଆତ୍ମାକୁ ଶୁଦ୍ଧ କରୁଛି ।
ଏବେ ଏଠି ସଙ୍ଗୀତ ନାହିଁ
ଶୁଖିଲା ବଂଶୀଟା ପଡ଼ି ରହିଛି
ତା' ଦେହରେ ଗୋଡ଼ ବାଜିଗଲେ
ସେ ଚିତ୍କାର କରୁଛି ।
ସମୟ ବଦଳି ଯାଇଛି
ମହୁମାଛି ମାନେ ମଶା ପାଲଟି ଯାଇଛନ୍ତି
ଆଉ ମଶାମାନେ ମଣିଷ;
ସେମାନେ ଲକ୍ଷ ଲକ୍ଷ ସଂଖ୍ୟାରେ
ନର୍ଦ୍ଦମାରେ ଜନ୍ମ ନେଉଛନ୍ତି
ରକ୍ତ ପାଇଁ ଚିତ୍କାର କରୁଛନ୍ତି

ସନ୍ଧ୍ୟା ହେଲେ ଦଳଦଳ ହୋଇ
ଗୃହରେ ପ୍ରବେଶ କରୁଛନ୍ତି
ଥୋକେ ମଶା ଧୂପରେ ମରୁଛନ୍ତି
ଆଉ ଥୋକେ କାହାର ଚାପଡା ଘାତରେ ।
ଏଇ ଶୁଣିବାକୁ ମିଳିଲା
କବି ଜଣେ କେହି କହୁଛି ମଶାକୁ
ଭାଇ ! ତୋରି ମୁକ୍ତିପାଇଁ ମୁଁ ସ୍ୱପ୍ନ ଦେଖୁଛି
କବିତା ଲେଖୁଛି
ଭଁ ଭଁ ଶବ୍ଦ କରି ତୁ ମୋତେ ଡିଷ୍ଟର୍ବ କରନା
ଆ ମୋ ପିଠିରେ ବସ, ଯେତେ ପାର ରକ୍ତ ପିଉଛୁ ପି
କିନ୍ତୁ ମୋତେ ଡିଷ୍ଟର୍ବ କରନା ।
ମଶାକୁ ମୌକା ମିଳିଗଲା
ବଦଳି ଯାଇଥିବା ସମୟର ମଣିଷ ସେ
କବିର ପିଠିରେ ବସି ପଡ଼ିଲା
ପେଟଭରି ରକ୍ତ ପିଇଲା
ବାନ୍ତିକଲା ଯାଏ, ମଲାଯାଏ ।



# ଈଶ୍ୱର ହେବାକୁ ଚାହେଁ

ଡିବିରିର ଆଲୁଅରେ
ଆଲୋକିତ ହୁଏନା
ପୃଥିବୀ
ବସା ବାନ୍ଧିବାର କଷ୍ଟ
ଜାଣେ ଅନୁଭବୀ ।
ତମର ଦାସତ୍ୱ ପ୍ରାଣ
ଚାହେଁ ନିରାପତ୍ତା
ମୋ ମଣିଷ ସତ୍ତା ମଧ୍ୟେ
ମୁକ୍ତି ସ୍ୱାଧୀନତା ।
ତମେ ଚାହିଁ ଚୌକାଠରେ
ଥିବ ଚିରକାଳ
ନଚେତ୍ ଯେ ପାଲଟିବ
ଅହଲ୍ୟା ପଥର
ତେଣୁ ଭୟ କର ତମେ
ଇନ୍ଦ୍ରର ସାନ୍ନିଧ
ଝରକା ଫାଙ୍କରୁ କାଳେ
ବିପ୍ର ଦେଖିନବ ।
ତେଣୁ ଭୟ କର ତମେ
ମିଶିବାକୁ ମଣିଷର ତୁଲେ-
ମୋର ବିହଂଗମ ମନ

ଆକାଶରେ କିଂତୁ ଉଡ଼ିବୁଲେ ।
ଆକାଶ ଈଶ୍ୱର ଆଉ ସବୁଜିମା
ଭରା ଏଇମନ
ଘୂରି ବୁଲେ ପୃଥିବୀରେ
କାଳଜୟୀ ବିହଂଗମ ସମ
ଅଶେଷ ସାଧନା ଲବ୍ଧ
ସାମ୍ୟ ଆଉ ମୁକ୍ତିର ଶୋଣିତ
ସତ୍ୟବାନ ମୋ ସତ୍ତାରେ
କରେ ବିବର୍ତ୍ତିତ
ସାବିତ୍ରୀର ତପସ୍ୟାକୁ
ଅସ୍ୱୀକାର କରେ
ଜୀବନ୍ୟାସ ଚାହେଁନା ମୁଁ
ଅନ୍ୟର ଇଚ୍ଛାରେ
ଅନ୍ନ ଦେଇ କାହାରେ ମୁଁ
ଚାହେଁନା ସଂଭୋଗ
ମୋର କାଠୁରିଆ ମନ
ଚାହେଁ ମୁକ୍ତ ଭୋଗ
ମୁକ୍ତ ହେଉ ଏ ପୃଥିବୀ
ଯୌନତା ଓ ପ୍ରେମ
ଈଶ୍ୱର ହେବାକୁ ଚାହେଁ
ମୁଁ ଯେ ବିହଙ୍ଗମ ।

□□□

# "ଜୀବନ ବାଦୀ"

ଜୀବନ ଯେଉଁଠି ରକ୍ତରେ ଜୁଡୁବୁଡୁ
ମୃତ୍ୟୁ ଯେଉଁଠି ଆଉଁସି ନିଏ ମୋ ଛାତି
ଦିବସ ଓ ନିଶି କାନ୍ଦେ ମୁଁ ଅହରହ
କାହିଁକି ଭଲା ମୁଁ ଭୁଲ୍‌ରେ ଗଲି ମାତି ।
ଆବେଗର ଦାମ୍ କିଏ ସେ ଦେବ ବା କହ
ଆଗତୁରା ଯିଏ ହିସାବ ନିକାଶ କରେ
ଜୀବନ ତା ପାଇଁ ସ୍ୱାର୍ଥରେ ଅହରହ
ଚିମିନ୍‌ର ସମ ଯାନ୍ତ୍ରିକ ଧୂଆଁ ଛାଡ଼େ
ଯନ୍ତ୍ରଣା ମୋର ବଢ଼ିଯାଏ ଦିନୁଦିନ
ବଞ୍ଚିବା ଏଠି ଭାବୁଛି ବୃଥା ମୁଁ ସିନା
ବଞ୍ଚିଛି ଖାଲି ଦୁଃଖରେ ଯାହା ମୁହିଁ
ମୋ ଚାରିପଟରେ ମୃତ୍ୟୁର ପରୱାନା ।
ତଥାପି ପାରେନା ଭୁଲି ମୁଁ କିନ୍ତୁ ଭାଇ
ବିଶ୍ୱ ପଥିକ ବିଶ୍ୱର ପଥେ ପଥେ
କେତେ ବିରାଟ ମୋ ଇଚ୍ଛା କେଜାଣି ଘୂରେ
ଅହରହ ମୋର ଜୀବନ ଜଗତ ରଥେ ।
ପହଂଚାଇ ଦିଏ ଜୀବନର ମଇଦାନେ
ସଂଘର୍ଷ ଆଉ ସଂଗ୍ରାମ ସହ ଯୋଡି

ମୁକ୍ତି ମଶାଲ ଜଳି ଉଠେ ମନେ ପ୍ରାଣେ
ମୃତ୍ୟୁର ଖେଳ ଯାଇଅଛି ମୁଁ ଯେ ଖେଳି ।
ମୃତ୍ୟୁର ପାଇଁ ମୁକ୍ତି ଯେ ମୋର ଲୋଡ଼ା
ଜୀବନର ପାଇଁ ପ୍ରେମ ଅଶ୍ରୁର ଜଳ
ଜୀବନ ଜୀଇଁବା କଷ୍ଟ ନୁହଁଇ ଯେଣୁ
ଜୀବନଟା ଅଟେ ପ୍ରେମ ମୁକ୍ତିର ଖେଳ ।"

- ❑❑❑

# ସଂପ୍ରତି ମଣିଷ

ପଛକୁ ଚାହିଁବା ମାତ୍ରେ
ପଛ ମୋତେ ପିଠି କରି କହେ
ପାଦ ଠାରୁ ମୁଣ୍ଡଯାଏଁ
ମଣିଷ ଯେ ପରମାର୍ଥ ନୁହେଁ ।
ମଣିଷ ମଣିଷ !
ପଶ୍ଚାତରୁ ଅଗ୍ରଭାଗ
ନିର୍ଦ୍ଧାରିତ ଗତି ଅହର୍ନିଶ
ସୁଜଳା ସୁଫଳା ଏଇ
ମାଟିରେ ଯେ ମଣିଷର ରବ
ହାହାକାର କଲାବେଳେ
ମନେପଡ଼େ ପ୍ରାକ୍ତନ ଶୈଶବ
ଅତୀତଟା ଥିଲା ଭଲ ଅତୀତଟା
ଥିଲା ସୁଖମୟ
ସାଂପ୍ରତିକ ଜୀବନଟା
ସଂଘର୍ଷ ଓ ଅଯଥା ସଂଶୟ
ସନ୍ଦେହ ଓ ଅବିଶ୍ୱାସେ
ମଧ୍ୟେ ମଧ୍ୟେ ମଣିଷର ମନ
ସାପପରି ଫୁତ୍କାରର
ବାଘପରି କରଇ ଗର୍ଜ୍ଜନ ।
ପରିଣତି ପଶ୍ଚାତ୍ତାପ

ଖାଁ ଖାଁ ହୃଦୟ ଶୂନ୍ୟତା
ସବୁ କିଛି ମରିଯାଏ
ଅବଶିଷ୍ଟ ଯାହା ଭାବୁଳତା
ମଣିଷ ଏକଦା ଥିଲା
ପ୍ରକୃତିର ପରମ ବିଶ୍ୱାସୀ
ହଠାତ୍ ଗ୍ରହଣ କଲା
ଈଶ୍ୱରର ସତ୍ତା ଅବିନାଶୀ
ତାକୁ ପୁଣି ତ୍ୟାଗ କଲା
କଲା ପୁଣି ବସ୍ତୁର ପୂଜନ
କେଉଁଠି ହେଲାନି ସ୍ଥିର
ଦ୍ୱିଧାଗ୍ରସ୍ତ ଏ ମଣିଷ ମନ।
ପିଞ୍ଜରା ଆବଦ୍ଧ ହୋଇ
ଏବେ ସିଏ ନିରବ ନିଶ୍ଚୁପ
ଯଦିଓ ବା ପାକୁଳାଏ
ପୁଞ୍ଜିବାଦୀ ବଜାରର ଗନ୍ଧ
ପେଟ ତା ଅପୂରା
ଲଢ଼ିବାର ଶକ୍ତି ନାହିଁ
ଭଗ୍ନଜାନୁ ସେ ଯେ ସର୍ବହରା।
ବିଶ୍ୱାସ ତା ଯାଇଅଛି ମରି
ବିଳମ୍ବିତ ପୁଞ୍ଜିବାଦୀ ବିଶ୍ୱମଧ୍ୟେ
ଚକ୍ରାକାରେ ଖାଏ ସେ ଭଉଁରୀ।
ମଣିଷ ! ମଣିଷ !
ସମୟର ନିଷ୍ପେଶଣେ ନିଷ୍ପେଶିତ
ସେ ଯେ ଅହର୍ନିଶ।

❑❑❑

# ଭଲ ଲାଗେ ବଂଚିବାକୁ ଇଚ୍ଛାହୁଏ

ଭଲ ଲାଗେ ! ଖୁବ୍ ଭଲ ଲାଗେ
ମୁଁ ଯେ ଏକ ନିଃସଂଗ ନାୟକ
କିଛି କିଛି ଅନୁଭୂତି
ଜୀବନର କିଛି ଅପୂର୍ଣତା
ବ୍ୟକ୍ତିଗତ ହତାଶା ଓ ଆବେଗର
ଢେଉ ମାଳ ମାଳ
ଲହଡ଼ି ଭାଙ୍ଗେ ମୋ ମନେ
ଇତିହାସ, ରାଜନୀତି, ଧର୍ମଘଟ
ବିପ୍ଳବ ଓ ପ୍ରେମ
ସବୁ ମଧ୍ୟେ ମୁଁ ଯେ ଗତିଷ୍ମାନ
ବନ୍ଦ ବତାସରୁ କିଛି
ସାଉଁଟେ ହିଲ୍ଲୋଳ।
ମୋର ମୁକ୍ତି ରୂପପାଏ
ମୋର ସଂଗ୍ରାମରେ
କ୍ଷତାକ୍ତ ହେବାର
ଅନୁଭୂତି ମଧ୍ୟେ
ମୁଁ ନିଜକୁ ଉଚ୍ଚକିତ କରେ।
ଜୀବନରେ ହତ୍ୟା ଆଉ ଲୁଣ୍ଠନର
ଇତିହାସେ, ମୁଁ ବି ହତ୍ୟାକାରୀ
ଅସତ୍ୟର ସହରରେ କାହାକୁ ବା ମାରି

ଫେରି ଆସି ଦେଖେ
ମୋ ଦେହେ ଲାଗିଛି ରକ୍ତ ଯାହା
ତାହା ଅଟେ-ପୁଣ୍ୟର ବିଜୁଳି ।
ଭଲ ଲାଗେ ଖୁବ୍ ଭଲ ଲାଗେ
ମୋ ଖଣ୍ଡା ଘୂରିଲେ
ମୋ ହାତରେ କେହି ହତ ହେଲେ
ଡରିବାର ପରିବର୍ତ୍ତେ
ମୁଁ ହସେ ଉଲ୍ଲାସେ
ସେଥିପାଇଁ କେହି ମୋତେ
ଦୋଷେ ଆଉ ରୋଷେ
ଅଭିଯୋଗ କରିଥାଏ
ମୁଁ ଉଦ୍ଧତ ଭଡ଼ାଟିଆ ଗୁଣ୍ଡା ବିପ୍ଳବର ।
ଭଲ ଲାଗେ ଖୁବ୍ ଭଲ ଲାଗେ
ମୋ ପ୍ରତିକାର ଟିକେ ସ୍ନେହ
ସେ ସ୍ନେହକୁ ନେଇ ପୁଣି
ଆଉ କାର ଈର୍ଷା
କବିତା ରଚନା
ଅର୍ଥନୀତି, ରାଜନୀତି ଚର୍ଚ୍ଚା
ମଧ୍ୟେ ମୋ ସାଫଲ୍ୟ
ମୋ ମନକୁ ଛୁଏଁ
ଅନ୍ୟ ଥୋକେ କବି ଆଉ ବୁଦ୍ଧିଜୀବୀ
ବାନରଙ୍କ
ଅବଜ୍ଞା ଓ ପ୍ରତ୍ୟାଖ୍ୟାନ ସତ୍ତ୍ୱେ;
ଖୁବ୍ ଭଲ ଲାଗେ ମୋତେ
ସେମାନଙ୍କ ଛୁରୀକା ଆଘାତ
ସ୍ନାୟୁ ଉତ୍ତେଜକ / କ୍ରୋଧୀ ମାଙ୍କଡ଼ଙ୍କ
ଖିଙ୍କାରି ହେବା ସ୍ୱଭାବ
ବେଶ୍ ହାସ୍ୟକର ଯେଣୁ

ଖୁବ୍ ଭଲ ଲାଗେ ।
ମୁଁ ଦେଖୁଛି ଥୋକେ ବନ୍ଧୁ ଏଠି
କବି ହେବା ପାଇଁ
କବିତା ଲେଖନ୍ତି
ପୁରସ୍କାର ଅଣ୍ଟାଳନ୍ତି
ପ୍ରକାଶକ ଓ ସମାଲୋଚକ
ପଛରେ ଗୋଡ଼ାନ୍ତି ।
ଆଉ ଥୋକେ ସାଥୀ ରାଜନୀତି କରି
ଅର୍ଥ ଆଉ କ୍ଷମତା ଠୁଳାନ୍ତି ।
କେହି କେହି ବାମପନ୍ଥୀ ଭାଇ
ସୃଷ୍ଟି କରି ବିପ୍ଳବରେ ଘାଇ
ସଂସଦୀୟ ରାଜନୀତି ଘୋଡ଼ା ବେପାରରୁ
ଅବସର ନେଇ
ଶ୍ରମିକ ରାଜନୀତି ବେପାର ଛୁଟାନ୍ତି ।
ଆଉ କେହି କେହି
ଭାଷା, ଜାତି, ବେଉଷଣେ
ଚାକିରି ଓ ବ୍ୟବସାୟେ
କଣ୍ଟ୍ରାକ୍ଟ ଓ ପ୍ରେମେ
ଛଳନା ଓ
ନିରାଶାର ବସ୍ଷପ୍ ତଳେ
ଆଶ୍ରୟ ଲୋଡନ୍ତି ।
ଏଠି ଚାଲେ ହରେକ୍ କିସମ ଧନ୍ଦା
ବିଲେଇଙ୍କ ଦୁଧପିଆ
ବାଘର ମାଉଁସ
ସବୁ ଦେଖି ଥୋକେ ନାଗରିକ
କହିଥାନ୍ତି କିଛି ହେବ ନାହିଁ
ଚାକିରି ବା ବ୍ୟବସାୟ
ସାହିତ୍ୟ ବା ରାଜନୀତି

ସଂସଦ ଓ ସଂଗଠନ ଦ୍ୱାରା
ସବୁ ଏଠି ଚୋର
ଶୋଷଣଟା ସୀମା ଟପିଲାଣି।
କାହିଁ ଉଜାଗର ଭାବ
କାହିଁ ଜାଗରଣ;
କାହିଁ ଏଠି ଭଲ ମଣିଷଙ୍କ ସ୍ଥାନ ?
ଖରାପ୍ ମଣିଷମାନେ ଏଠି
ରାଜୁତି ଚଳାନ୍ତି;
ଏସବୁ ସତ୍ତ୍ୱେ ବି
ଚିନ୍ତା ଆଉ ଚେତନାରେ
ମୁଁ ନୁହଁ ଉଜୁଡ଼ା
ନୁହେଁ ମୁଁ ହତାଶ;
କାରଣ ମୁଁ ଜାଣିଛି ମଣିଷର
ଏହା ହିଁ ନିୟତି
ଇତିହାସ ଚକା କେବେ
ପଛକୁ ଘୂରେନା
ସମୟର ଗତି ବେଗ କେବେ
ହୁଏ ନାହିଁ ବନ୍ଦ।
ଏହା ଜାଣିଥିବା ହେତୁ
ଭାବେ ମୁହିଁ ଦିନେ-
ଡେଙ୍ଗା ଗେଡ଼ା ଲୋକମାନେ
ଏକାଠି ହୋଇବେ
କଣା, କୁଜା, ଅଂଧ, ଛୋଟା, କାଲ
ନୂଆ ରୂପ, ନୂଆ ଶବ୍ଦ ସହ
ନୂତନ ଢଂଗରେ, ନୂଆ ଉଦ୍ଦେଶ୍ୟରେ
ଗିନି ବଜାଇବେ।
ଏପରିକି ଏହି କବିତାର
କିଛି ଧାଡ଼ି ପୂର୍ବେ

ମୁଁ ଯାହାକୁ ମାଙ୍କଡ଼ କହିଛି
ସେଇ ହନୁମାନେ
ସୁବିଧା ସୁଯୋଗ ଦେଖି
ଅବଶ୍ୟ ମାତିବେ ।
କାରଣ କାହାର ଭାଗ୍ୟ
ଏଠି ଭଲ ଯେ
ଏସବୁ ଜାଣିଥିବାରୁ
ମୁଁ ଅବଶ୍ୟମ୍ଭାବୀ
ସେଇ ସମୟକୁ
ଅପେକ୍ଷା କରିଛି ।
ମୁଁ ଜାଣିଛି ଆଗାମୀର ସେଇ
ଦିନମାନଙ୍କରେ
ଗଧଂକର  କୀର୍ତ୍ତନ ଯେ
ବନ୍ଦ ହୋଇଯିବ
ଛେଳିମାନଙ୍କର ମେଁ ମେଁ ରବ
ଶୃଗାଳର ଧୂର୍ତ୍ତ ବୁଦ୍ଧି
ବାଘ ଆଉ ସିଂହର ଗର୍ଜନ
ସବୁ ବନ୍ଦ ହେବ ।
ବିଦେଶୀ ଅତିଥିଙ୍କର
ନୈଶ ଭୋଜରେ ସେଦିନ
କୁକୁରଙ୍କ ପାଇଁ ନଥିବ ଖାଦ୍ୟ
ଖଲିପତ୍ରେ ।
ମୁଁ ଜାଣିଛି ଏହା ବି ଘଟିବ ।
ମାଲିକମାନେ ଦିନେ ଏଠି ସଭା କରିବେ
କାହା ସପକ୍ଷରେ ଅବା କାହା ବିପକ୍ଷରେ
ସମୟ କହିବ;
ଯେଉଁଦିନ ଅଗଣିତ ମଣିଷଙ୍କ ହାତ
ମୋ ହାତ ସହିତ

ଦେଖୁ ଦେଖୁ ହଠାତ୍ ଯେ ଉପରକୁ
ଉଠିଯାଇଥିବ ।
ତେଣୁ ଏଠି ବଞ୍ଚିବାକୁ ଇଛାହୁଏ
ଖୁବ୍ ଭଲ ଲଗେ
ମୋ ଭଳି ଉଦ୍ଭଟ ଏକ ମଣିଷକୁ
ଅଗଣିତ ନିର୍ବେଦଙ୍କ ମେଳେ
କେଉଁ ଏକ ଘଟଣାକୁ
ରୂପାୟିତ କରିବା ଆଶାରେ;
ବଂଚିବାକୁ ଇଚ୍ଛାହୁଏ !
ଖୁବ୍ ଭଲ ଲାଗେ
କାରଣ ଏ ନିଃସଂଗତା
ଆଜି ନହେଲେ ବି
କାଲି ନିଶ୍ଚେ କଟି ଯାଇଥିବ ।

❑❑❑

# ଝରିପୋକ ପରି ମଣିଷ ଝଡ଼ି ନଯାଉ

ଝରିପୋକ ପରି ଝରି ପଡୁଛନ୍ତି ମଣିଷମାନେ
ଆଲୋକ ଲୋଭରେ ଆକର୍ଷିତ ହୋଇ;
ଅଥଚ ଆଲୋକ ଯେ ଅଛି ନିଜ ଭିତରେ
ମଣିଷକୁ ତାହା ଜାଣୁ ନାହିଁ ।
ଜୀବନର ଯନ୍ତଣାକୁ ବୋହି ବୋହି
ବାଟ ଚାଲୁଛି ବାଟୋଇ
ଅଥଚ ଲକ୍ଷ୍ୟସ୍ଥଳରେ ପହଂଚିବାର ବହୁ ପୂର୍ବରୁ
ଟଳି ପଡୁଛି ସେ ବାଟବଣା ହୋଇ ।
ମୁଁ ମୁଁ ମଧ୍ୟରେ ମୁକାମ ହରା ମଣିଷର
ନିଜ ପାଇଁ ଠିକଣାଟିଏ ନାହିଁ
ଦିଗହରା ମଣିଷ ନିଜ ଭିତରେ ମୁଁ କୁ
ଚିହ୍ନି ପାରୁନି -ମୁଁ ମୁଁ ହୋଇ ।
ଦିଗ୍‌ବଳୟରେ ଇନ୍ଦ୍ରଧନୁର ଆଭା
ସପ୍ତରଂଗରେ ଜୀବନ ଯାର ଢ଼ଳା
ସ୍ୱଳ୍ପ ସମୟ ପାଇଁ ହେଲେ ବି ଇନ୍ଦ୍ରଧନୁ
ସତ୍ୟ, ଶିବ, ସୁନ୍ଦରର ଲୀଳା ।
କିଛିବର୍ଷ ପାଇଁ ପୃଥିବୀରେ ପାଦ ଦେଇଥିଲେ ବି ମଣିଷ
ଝରି ପୋକ ପରି ଝଡ଼ି ନ ଯାଉ
ମହାକାଳର ବକ୍ଷରେ ମଣିଷ, ମଣିଷ ପରି ହେଉ ।

□□□

# କୋଇଲି ଓ ନିରବତାର ଗୀତ

କୋଇଲି ସହ ଯେଉଁଦିନ ମିତ ହେଲି
କଥା ଛଳରେ କହିଲି-
"କୋଇଲି ! ତମ କୁହୁତାନରେ
ମୁଁ ନିରବତାକୁ ଖୋଜି ପାଇଛି;
ଏବେ ମୁଁ ଅନୁଭବ କରୁଛି
କେବଳ ନିରବତା ଛଡ଼ା ମୋ ପାଇଁ
ନାହିଁ କିଛି ।
କୋଳାହଳ ମଧ୍ୟରେ ମୋ କାନ
ବଜରା ପାଲଟି ଯାଇଥିଲା
ମତ୍‌ଲବୀ ମଣିଷ ମାନଙ୍କର
ଚିତ୍‌କାର ଶୁଣି ଶୁଣି
ମତେ କୁଆଡ଼େ ପଳାଇ ଯିବାକୁ
ଇଚ୍ଛା ହେଉଥିଲା;
ସମାଜ, ସଂସାର-ଦେଶ ଓ ବିଶ୍ୱର
ମସ୍ତ ପାଗଳ ମଣିଷ ମାନଙ୍କର
ବିକଟାଳ ସ୍ୱର ଶୁଣି
ମୁଁ ବିବ୍ରତ ଅନୁଭବ କରୁଥିଲି;
ମୋତେ ଲାଗୁଥିଲା
ପୃଥିବୀରେ ଏପରି କିଛି ମଣିଷ ଅଛନ୍ତି
ଯେଉଁମାନେ ଅତ୍ୟନ୍ତ ଚତୁର ଓ ଅହଂକାରୀ

ଆଉ କିଛି ନିରୀହ, ଭୟାତୁର ଓ ବୋକାପରି
ଏମାନେ କେହି କିନ୍ତୁ ମଣିଷ ହେବାକୁ ଚାହାଁନ୍ତିନି ।
କୋଇଲି ! ଅତୀତରେ ମୁଁ ଅନେକ ଗୀତ ଶୁଣିଥିଲି
ବଜାରରେ ବିକାଯାଇଥିବା ସି.ଡିକୁ
ଚଢ଼ା ଦାମ୍‌ରେ କିଣି ।
କିନ୍ତୁ ବିନା ମୂଲ୍ୟରେ
ଅରଣ୍ୟର ଏକାନ୍ତ ପରିବେଶରେ
ତମ ଗୀତରେ ମୁଁ ଯେମିତି
ନିରବତାକୁ ଖୋଜି ପାଇଲି
ଅହଂକାର ଶୂନ୍ୟତା ଓ ସରଳ ପଣିଆକୁ ଠାବକଲି
ତାହା ମତଲବୀ ମଣିଷଙ୍କ ପାଇଁ ଲେଖା ଯାଇଥିବା
ଗୀତରେ ନଥିଲା ।
କୋଇଲି ! ଗଛ ଡାଳରୁ ତୁମର କୁହୁତାନ ଶୁଣି
ମୁଁ ମନ୍ତ୍ର ମୁଗ୍ଧ ହେଲି
ଜୀବନର ଅର୍ଥ କ'ଣ ବୁଝିଲି;
ତମରି ସାହାରାରେ ମୁଁ ମୋର ଅବଶିଷ୍ଟ ଜୀବନ ତକ
ବିତାଇ ଦେବାକୁ ସ୍ଥିର କଲି;
କୋଳାହଳମୟ ପୃଥିବୀର ମଣିଷମାନଙ୍କ ଠାରୁ
ନିଜକୁ ଦୂରେଇ ନେଇ ମୁଁ ନିରବତାକୁ
ଭଲ ପାଇଗଲି ।"

□□□

## ୯୯ ଭାଗର ସ୍ୱର

ତମ କାନରେ ଫୁଙ୍କିଦେଲି ସାମାଜିକ କ୍ରାନ୍ତିର ବାର୍ତ୍ତା
ତମେ କହିଲ, ସେଥିପାଇଁ ଅସୀମ ତ୍ୟାଗ ଲୋଡ଼ା
ତିଆରି କରିବାକୁ ହେବ ପୁଞ୍ଜିବାଦର ଧ୍ୱଂସର ଖସଡା
ମୁଁ କହିଲି ପୁଞ୍ଜିବାଦର ଧ୍ୱଂସ ପାଇଁ
ଧର୍ମ ଓ ଈଶ୍ୱର ରୂପୀ ଧାରଣାର ଉଚ୍ଛେଦ ଋଚ;
ତମେ କହିଲ, ସତକଥା
କିନ୍ତୁ ପୁଞ୍ଜିବାଦୀ ଶୋଷଣରେ ବିବ୍ରତ ଜନତା
ଏହାକୁ କ'ଣ ମାନିନେବ,
କ୍ରନ୍ଦନରତ ଜନତା କ'ଣ ଈଶ୍ୱର ଉପରୁ
ଆସ୍ଥା ହରାଇ ପାରିବ ?
ମୁଁ କହିଲି କେବଳ ସଂଘର୍ଷ
୧ ଭାଗ ବିରୁଦ୍ଧରେ ୯୯ ଭାଗ ରୋଷ ହିଁ
ଏହାର ସମାଧାନ ।
ତମେ କହିଲ ଠିକ୍ କଥା; କିନ୍ତୁ ସାରା ପୃଥିବୀରେ
୧ ଭାଗ ଲୋକଙ୍କ ହାତରେ ଯେ କ୍ଷମତା
୯୯ ଭାଗକୁ ଯେ ସେମାନେ କାବୁକରି ରଖିଛନ୍ତି ?
ମୁଁ କହିଲି ତାହା କିନ୍ତୁ ବେଶିଦିନ ନୁହଁ
ସାମ୍ରାଜ୍ୟ ବିରୋଧରେ ଜାଗିଲେଣି ସମୂହ
ସାରା ପୃଥିବୀରେ ସଂଗଠିତ ହେବ ୯୯ ଭାଗ ବିପ୍ଲବ
ଆରମ୍ଭ ହୋଇଯିବ ୧ ଭାଗ ଲୋକଙ୍କର

କ୍ଷମତାଚ୍ୟୁତ ହେବାର ପର୍ବ;
ତମେ କହିଲ ବାଃ କବି ! ବାଃ ତମର ପରିକଳ୍ପନା
ଚମତ୍କାର ତମର ୯୯ ଭାଗ ପାଇଁ କବିତା ରଚନା
ତେବେ ଏହା ଆରମ୍ଭ ହେବ କିପରି
୯୯ ଭାଗ କିପରି ହେବ ସଂଗଠିତ ?
ମୁଁ କହିଲି ତମେ ତ ଜାଣିଛ, ଏକୁଟିଆ ନୁହଁ
ସାମାଜିକ ଭାବରେ ଉତ୍ପାଦନ କରେ ମଣିଷ
କିନ୍ତୁ ୯୯ ଭାଗ ନୁହଁ ୧ ଭାଗ ଲୋକ ହିଁ
ସାମାଜିକ ଉତ୍ପାଦନର ମାଲିକ
ସାମାଜିକ ଉତ୍ପାଦନରେ ସମୂହର ଅଧିକାର ଦାବିରେ
ଦିନେ ପୃଥିବୀ ହେବ ପ୍ରକମ୍ପିତ
୯୯ଭାଗ ବିପ୍ଳବ ଜରିଆରେ ୧ ଭାଗ ଲୋକ
ଆଜି ନହେଲେ ବି କାଲି ହେବେ କ୍ଷମତାଚ୍ୟୁତ ।
ତମେ କହିଲ, ତେବେ ଆଉ ଡ଼େରି କାହିଁକି
୯୯ ଭାଗ ବିପ୍ଳବ ଆରମ୍ଭ ହୋଇ ଯାଉ
୯୯ଭାଗ ବିପ୍ଳବ ଜରିଆରେ ୧୦୦ଭାଗ ଲୋକ ମୁକ୍ତି ପାଉ ।
ମୁଁ ତମ ମୁହଁରେ ହସ ଫୁଟାଇ କହିଲି, ସାଥୀ ମୋର !
ଆମର ଏ ଯୌଥ ପରିକଳ୍ପନା
ଆଜି ନହେଲେ ବି କାଲି ହେବ ଇତିହାସ ।



# ତିନିଟି ଅ କବିତା

ସୂର୍ଯ୍ୟର ବୟସ ବଢ଼େ
ଆଲୋକ ଯେ ସରିଯିବ
ଏଇମିତି ଭାବିବା ଭିତରେ
ଅନ୍ଧାର ଅଧିକ ହେବ
ତେଣୁ ଏଇ ଭାବିବାର ଭୁଲ୍
ସଂପର୍କରେ ସଚେତନ ହୋଇ
ଯାତ୍ରାରମ୍ଭ କଲାବେଳେ
ଆଉ ଏକ ଭୁଲ୍ ହୋଇଯାଏ;
ଗୋଟିଏ ଯେ ଲକ୍ଷ୍ୟ ସ୍ଥିର କରି
ସେଠାରେ ଯେ ପହଂଚୁ ପହଂଚୁ
ଅନ୍ୟ ଏକ ଲକ୍ଷ୍ୟ ଉଙ୍କିମାରେ;
ଏଥର ଏ ଦ୍ୱିତୀୟ ଲକ୍ଷ୍ୟକୁ
ଢ଼େଲାମାରି ଶାବଳରେ ତାଡି
ଭାଙ୍ଗି ଫିଙ୍ଗି ହୁଏନାହିଁ ଯେଣୁ
ସ୍ଥିର କରାଯାଏ
ପ୍ରତିଟି ଲକ୍ଷ୍ୟର ଆରମ୍ଭ ବିନ୍ଦୁରୁ
ଏକାଧିକ ଲକ୍ଷ୍ୟକୁ ଲକ୍ଷ୍ୟସ୍ଥଳ ଭାବି
ଯାତ୍ରାରମ୍ଭ କଲେ
ମୃତ୍ୟୁକୁ ଏକାଠି କରି ଜୀବନ ସହିତ
ସମୟକୁ ପାଇହେବ କିଛିଟା ନିକଟୁ ।

||୨||

କେହି କ'ଣ ଭାବୁଥିବ ଭାବି
ମନ ମଧ୍ୟେ ଶଙ୍କା ରଖି
ବେଶ୍ୟାଳୟକୁ ଗଲାବେଳେ
ଛାତିର ଓଜନ ବଢ଼େ ନାହିଁ
ସେଇମିତି ଏକନିଷ୍ଠ ପତିଭାବେ
ସ୍ତ୍ରୀ ସଂଗେ ସହବାସ କଲେ
କାହା ଭାଗ୍ୟେ ଯୁଟେନା ଆନନ୍ଦ
ସବୁକିଛି ଅଭ୍ୟାସ ଓ ସୁଖର ବାହାନା ।

||୩||

ଓଲଟ ଚିନ୍ତାର ବଶବର୍ତ୍ତୀ
ମୋର କବିତାର ପାଠକ ଗଣ
ଏହା କିନ୍ତୁ ଶେଷ ଶବ୍ଦ ନୁହଁ
ପୁଣି ଦେଖାହେବ
ଶବ୍ଦ ସହ ଖେଳୁଥିଲାବେଳେ
କେଉଁଠି କହି ପାରୁନି ଏଇ ଧରିନିଅ
କେଉଁ ଏକ ବେଶ୍ୟାଳୟେ ଅବା ରେସ୍ତୋରାରେ
ଅବା କେଉଁ ପ୍ରତିକ୍ରିୟାଶୀଳ
ପ୍ରତିଷ୍ଠାନ ବିପକ୍ଷରେ ବୋମା ଫିଙ୍ଗୁଥିଲାବେଳେ
ଅଚାନକ ନିଶ୍ଚେ ଦେଖାହେବ
ଆଶାକରେ ସେତେବେଳେ
ଚେତନାର ଚଉହଦି ତମ
ଦିଗ୍‌ବଳୟ ପରି ବିସ୍ତାରିତ ଥିବ ।

❑❑❑

# ଅବଦମନ

ତମ ପିଠିରେ ରଖିଲି ହାତ
ତମେ ଚମକି ପଡ଼ିଲ
ଜାଣେନା କାହିଁକି
ଯୁଗ ଯୁଗର ସଂସ୍କାର ଯେଉଁଠି
ତୁମ ବାଟ ଓଗାଳେ
ସମ୍ଭବତଃ ତୁମେ ସେଠାରେ ନାଚାର ।
ଛୁଇଁଦେଲେ କେହି ହୁଏନା ଅଛୁଆଁ
ବରଂ ଛୁଇଁଦେଲେ ଲିଭିଯାଏ ନିଆଁ
ବିଭେଦର
ଭାଙ୍ଗିଯାଏ ବୈଷମ୍ୟର ପ୍ରାଚୀର
ଛୁଆଁ ଅଛୁଆଁ ରୋଗ ମନୁଙ୍କ ନିର୍ମାଣ
ସାମାଜିକ ନିପୀଡନ ।
ନିପୀଡିତ ସମାଜ
ନିପୀଡିତ ନାରୀ ଓ ପୁରୁଷ
ନିପୀଡନ ଯୁକ୍ତ ।
ସ୍ପର୍ଶ ମାତ୍ରେ ପ୍ରେରଣା
ସ୍ପର୍ଶାତୁରତା ଓ ସ୍ପର୍ଶକତାରତା
ମଣିଷକୁ କରେ ବାଟବଣା ।
ପ୍ରଜାପତି ପରି ଛୁଇଁଦିଅ ଫୁଲକୁ
ଫୁଲର ସୌନ୍ଦର୍ଯ୍ୟ ବଢ଼ିବ

ଫୁଲ ପୁଲକିତ ହେବ ।
ବସନ୍ତର ହାୱାର ସ୍ପର୍ଶରେ
ଟେରି ଗଛରେ ସୃଷ୍ଟିହୁଏ ଶୃଙ୍ଗାରର ରାଗ ।
ଶୃଙ୍ଗାର ନୁହଁଇ ଅଧପତନ
ପରସ୍ପର ସହମତିରେ ତାର ଜନ୍ମ
ବିନା ସହମତିରେ ଯାହା ପାଗଳ ପଣ ।
ତମ ମଥାରେ ରଖିଲି ହାତ ତୁମେ ଖୁସି ହେଲ
ତମ ପିଠିରେ ରଖିଲ ହାତ ତୁମେ ଚମକି ପଡ଼ିଲ।



# ଭାରତ ବର୍ଷ

||କ||

ସ୍ୱାଧୀନତାର ଚାଳିଷ ବର୍ଷ ପରେ ବି
କିମ୍ଭୁତ କିମାକାର ଯାହାର ପରିବେଶ
କିମ୍ଭୁତ କିମାକାର ଯେଉଁ ଦେଶ ||

||ଖ||

ଯାହାକୁ ଡକାଯାଏ ମା'
ତା' କୋଳରେ
କଳାହାଣ୍ଡି ପରି ଏକୁ ଛୁଆ ||

||ଗ||

ଯେଉଁଠି ଦେଖିବ ଦୁର୍ନୀତି
ସେଇଠି ଭାରତ ବର୍ଷର ସ୍ଥିତି ।
ଯେଉଁଠି ଦେଖିବ ଧର୍ମ
ସେଇଠାରେ ଭାରତବର୍ଷର ନାମ ||

||ଘ||

ଭାରତ ବର୍ଷ !
ସତୁରୀ କୋଟି ଲୋକଙ୍କ ପେଟରେ
ଯେଉଁଠି କ୍ଷୁଧା
ଦୁଇ ଲକ୍ଷ ବର୍ଗମାଇଲ୍ ଅଞ୍ଚଳରେ
ଯେଉଁଠି ମରୁଡ଼ି
ଚବିଶ ଘଣ୍ଟା ଯେଉଁଠି ଅନ୍ଧାର ||

||ଙ||

ଭାରତ ବର୍ଷ !

ନାରୀ ଧର୍ଷଣରେ

ଦୁର୍ନୀତିରେ

ଅନାହାର ମୃତ୍ୟୁରେ

ସବୁଠାରୁ ଉପରେ ଯାହାର ନାଁ ||

||ଚ||

ଇଲେକ୍‌ସନ୍ ଆସିଲେ

ଏଠି ଚାଲେ ଭୁରି ଭୋଜନ

ନ ଆସିଲେ ଯାଏ ଆସେ ବା କ'ଣ

କେହି ତା'ର ଦେଇ ପାରନ୍ତିନି

ଉତ୍ତର ||

||ଛ||

ମଧ୍ୟବିତ୍ତ ଏଠି ହାଇ ମାରେ

ସର୍ବହରା ଶୋଣିତ ନିଗାଡ଼େ

ଶୋଷକ ଏଠି ଗଦି ସଜାଡ଼େ ||

||ଜ||

ଦଲାଲ ମାନେ ଏଠି

ଦିବ୍ୟ ପୁରୁଷ

ଦସ୍ୟୁମାନେ ଏଠି ଦେବତା

ମୂର୍ଖମାନେ ଏଠି  ମହାପଣ୍ଡିତ

ଭାଟମାନେ ଏଠି ମହାକବି

ବିବେକୀ ମାନେ ଏଠି ବୋକା ||

||ଝ||

ଭାରତ ବର୍ଷ !

କବି ଗୁରୁଙ୍କର ଦେଶ

ବୁଦ୍ଧ ବାପୁଜୀଙ୍କର ଦେଶ ।

ଏଠି ମୁଷ୍ଟିବଦ୍ଧ ହୋଇଗଲେ ହାତ

ଊର୍ଦ୍ଧ୍ୱକୁ ଉତ୍ତୋଳିତ ହେଲେ
ରକ୍ତ ନେତ
କିଛି ଲୋକଙ୍କୁ ମାଡ଼ିବସେ
ପୂର୍ବସୂରୀଙ୍କ ଭୂତ ॥
॥ଡ॥
ଭାରତ ବର୍ଷ !
ଯେଉଁଠି ନାଗରିକମାନଙ୍କ
ରକ୍ତରୁ ନିଗାଡ଼ି ନିଆ ଯାଇଛି
ନିଆଁ
ପାଟିରୁ ଶବ୍ଦ
ହାତରୁ ଶକ୍ତି
ନିର୍ବାକ ନିସ୍ପନ୍ଦ ଏକ
ପାଳଭୂତ ॥

❑❑❑

# ସମ୍ରାଟଙ୍କ ସ୍ୱଗତୋକ୍ତି

ସମ୍ରାଟ ସ୍ୱଗତୋକ୍ତି କଲେ;
"ଯଦି ସମଗ୍ର ପୃଥିବୀଟା
ମୋ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ହୋଇଯାନ୍ତା
ତାହେଲେ, ପ୍ରଥମେ ମୁଁ ମୋର
ସଭାଷଦ ବର୍ଗଙ୍କ ସହ ପରାମର୍ଶ କରି
ସୈନ୍ୟ ସାମନ୍ତଙ୍କ ଜରିଆରେ
ମଳୟକୁ ବାନ୍ଧି ରଖନ୍ତି
ମୋ ମୁହଁ ଚାରିପଟେ,
ବସନ୍ତକୁ କହନ୍ତି ସେ ପ୍ରଥମ ପଦଯାତ୍ରା
ଆରମ୍ଭ କରନ୍ତା ମୋର ଅଗଣାରୁ;
ଫୁଲମାନେ ଫୁଟିବାକୁ ବାଧ୍ୟ ହୁଅନ୍ତେ ।
ତା' ପରେ ମୁଁ ମୋର ସାମ୍ରାଜ୍ୟର
ସର୍ବଶ୍ରେଷ୍ଠ ସୁନ୍ଦରୀକୁ ଉପଭୋଗ କରନ୍ତି
ଅତି ଆନନ୍ଦରେ ।
ଅବଶ୍ୟ ଏହାଠାରୁ ଅଧିକ ସୁଖକର ହୁଅନ୍ତା
ଯଦି ମୋ ସାମ୍ରାଜ୍ୟର ପ୍ରଥମ ରଜସ୍ୱଳା କନ୍ୟାକୁ
ମୋର ଜଣେ ବପୁବାନ ଚାଟଟା ଉଲଗ୍ନ କରନ୍ତା ଓ
ଉପଭୋଗ କରନ୍ତା, ମୋ ସାମନାରେ;
ଯା ପରେ ମୋତେ ଯଦି କେହି ଚରିତ୍ରହୀନ,
ବୋଲି ଆଖ୍ୟା ଦିଅନ୍ତା

ମୁଁ ତା ନାଁରେ କୋର୍ଟରେ ନାଲିସ କରନ୍ତି ।"
ସମ୍ରାଟ ପୁଣି ଥରେ ଚିନ୍ତାକଲେ
ଓ କହିଲେ
"ମୁଁ ନିହାତି ବୋକା ନୁହଁ
ମୋର କୋର୍ଟରେ ନାଲିସ କରିବା
କ'ଣ ଦର୍କାର ?
ମୁଁ ପରା ସମଗ୍ର ପୃଥିବୀର ସମ୍ରାଟ ।

❑❑❑

# ପ୍ରକୃତି ଓ ମଣିଷ

ଆକାଶର ନୀଳ ଆସ୍ତରଣ
ମୁଗ୍ଧ କରେ ଚକିତ ଆଶ୍ୱିନ
ପ୍ରକୃତିର ଆଶ୍ଚର୍ଯ୍ୟ ସୁନ୍ଦର
ରୁଦ୍ର ଭୟଙ୍କର
ରୂପ ଦେଖି ମନେହୁଏ
ମଣିଷ ଯେ କେତେ ଭାଗ୍ୟବାନ
ତା'ର ସମ୍ମୁଖରେ ଉପସ୍ଥିତ
ମୂର୍ତ୍ତ 'ଭଗବାନ'
ସୁଷମାର ସୁରଭିତ ବିଶ୍ୱ ।
ସ୍ରଷ୍ଟାର ସୃଷ୍ଟିରେ ଥାଏ କେତେ ଯେ ଆନନ୍ଦ
ସୃଷ୍ଟିକର୍ମ ଉପଭୋଗ ପ୍ରବଣତା ଭିତରେ ଯେ
ମଣିଷର ଜୀବନର ଛନ୍ଦ
ହୁଏ ଗତିମୟ;
ପ୍ରକୃତି ମଣିଷ ମଧ୍ୟେ
କବିତାର ଅପୂର୍ବ ଅନ୍ୱୟ
ଆଣେ ସ୍ୱାଧୀନତା
ସୃଜନ ବିଭୋର ଆମ ମାନବୀୟ ସତ୍ତା
କୋଣେ ଅନୁକୋଣେ
ଜାଗି ଉଠେ ପ୍ରୀତି ଓ ମମତା
ସୃଷ୍ଟି କରି ଅପୂର୍ବ ଆବେଗ

ରଚି ଦେଇ ପୁଲକର ପର୍ବ ।
ଆଜି କିନ୍ତୁ ସମୟର କ୍ରୁର ଅଭିଶାପେ
ମଣିଷ ଉପରେ ଚାଲେ ମଣିଷ ଶାସନ
ଅକ୍‌ଟୋପାସ ଦେହୀ ମଣଷର ମନ
ଇଚ୍ଛାକରେ ଧ୍ୱଂସକରି ପ୍ରକୃତିକୁ
ରଚିବା ତା ସ୍ୱପ୍ନର ଆୟନ ।
ସମସ୍ତ ପ୍ରଚେଷ୍ଟା କିନ୍ତୁ ହୁଏ ତା ବିଫଳ
ଅଗଣିତ ମଣିଷର ଲୋତକର ଭିଜାମାଟି ଜଳ
ପ୍ରକୃତିକୁ କରେ ଭୟଙ୍କର;
ପ୍ରକୃତି ନୁହଁଇ ସେ ଯେ
ମୁଷ୍ଟିମେୟ ଧନ ବୋଲି ମଣିଷଙ୍କ
ନଷ୍ଟଶୀଳ ଚେତନାର ଚର;
ଶୂନ୍ୟ କରି ସମସ୍ତ ନୀଳିମା
ସ୍ୱଚ୍ଛ ସବୁଜିମା
ଚୂର୍ଣ୍ଣକରି ଧନର ଗରିମା
ବିକ୍ଷୁବ୍‌ଧ ପବନେ
କହିଯାଏ ମଣିଷର କାନେ
"ଆଜିଠାରୁ ହେବନାହିଁ ପୃଥିବୀରେ
ଲାଲ ସୂର୍ଯ୍ୟୋଦୟ
ସବୁଜ ବନାନୀ ଆଉ ଘାସର ବଳୟ
ଘୁଂଚିଯିବ ମଣିଷର ଠାରୁ
ମଣିଷ ଯଦିବା ହୁଏ ଅଭଦ୍ର ଅଗ୍ରରୁ
ପ୍ରକୃତି ଭୀଷଣ ହେବ ପ୍ରକୃତିର ପ୍ରୀତି
ମଣିଷ ଭିତରେ ଯଦି ନଥାଏ କେଉଁଠି ।

□□□

# ମୁହୂର୍ତ୍ତିଟିଏ ଲୋଡ଼ା

ମୁହୂର୍ତ୍ତିଟିଏ ଲୋଡ଼ା
ମୃତ୍ୟୁ ପାଇଁ ମୁହୂର୍ତ୍ତିଟିଏ ନୁହଁ
ଜୀବନ ପାଇଁ ମୁହୂର୍ତ୍ତିଟିଏ ଲୋଡ଼ା ।
ଯେଉଁ ମୁହୂର୍ତ୍ତ ନିଶ୍ଚିତ କରିବ
ବଞ୍ଚିବାକୁ ଦେବ
ସମୟ ସୁଅରେ ଭାସି ଯାଉଥିବା
କୁଟା କାଠି ପରି ନୁହଁ
ଏକାନ୍ତ ଆପଣାର ଏଇ ପୃଥିବୀରେ
ଦୃପ୍ତ ଶାଖାଟିଏ ପରି
ସୂର୍ଯ୍ୟର ବଳୟକୁ ସ୍ପର୍ଶକରି ପାରୁଥିବା
ବୃକ୍ଷମୟ ମୁହୂର୍ତ୍ତିଟିଏ ଲୋଡ଼ା ।
ମୁହୂର୍ତ୍ତମାନଙ୍କୁ ଛଡ଼ାଇ ନେଇଛି କିଏ
ଆମଠାରୁ ?
ସାମ୍ରାଜ୍ୟବାଦ !
ଧ୍ୱଂସକର ତାକୁ
ତଥା କଥିତ ଗଣତନ୍ତ୍ର
ମୁଖା ଖୋଲିଦିଅ ତାର
ପୁଞ୍ଜି ତା, ସହିତ ମଣିଷର ସଂପର୍କ ଯେ
ମାରାତ୍ମକ-
ତା'ର ପ୍ରଭାବକୁ ହ୍ରାସକଲା ଭଳି

ତା'ର ବଳୟକୁ ସ୍ପର୍ଶ କଲା ଭଳି
ତା'ର ପ୍ରଭୁତ୍ୱକୁ ନାଶ କଲା ଭଳି
ତା'ର ଗର୍ବକୁ ଖର୍ବ କଲା ଭଳି
ମଣିଷ ସହିତ ତା'ର ସଂପର୍କକୁ
ରଦ୍ଦ କରି ପାରୁଥିବା
ପ୍ରତିହତ କରି ପାରୁଥିବା
ମୁକ୍ତ ସଂପର୍କରେ ଭରା,
ବିପ୍ଳବୀ ଚେତନାର
ରକ୍ତରଙ୍ଗା ମୁହୂର୍ତ୍ତଟିଏ ଲୋଡ଼ା ।
ମୁହୂର୍ତ୍ତଟିଏ  ଲୋଡ଼ା
କଜ୍ଜଳ ପାତିର କଳାରେ ବିଭୂଷିତ
କୋଇଲିର କୁହୁତାନରେ ମୁଖରିତ
ଧୂଆଁ ଆଉ ଧ୍ୱଂସର କବଳରୁ
ରକ୍ଷା ପାଇ ପାରୁଥିବା
ସବୁଜିମା ଭରା
ଆରଣ୍ୟକ ମୁହୂର୍ତ୍ତଟିଏ ଲୋଡ଼ା;
ଶତାବ୍ଦୀର ସନ୍ତ୍ରାସ କବଳରୁ
ପୂତଗନ୍ଧମୟ ପରିବେଶରେ ସଢୁଥିବା
ମଣିଷକୁ ଉଦ୍ଧାର କରିବା ପାଇଁ
ଜହ୍ନରାତିରେ ନଦୀକୂଳ ଲଙ୍ଘନ କଲାପରି
ଦରୋଟି ଭାଷାରେ ଶିଶୁ
ଶବ୍ଦରେ
ଉଚ୍ଛୁଳି ଉଠିଲା ପରି
ଫୁଲ ଫଗୁଣରେ ଭଅଁର
ପଥଭ୍ରଷ୍ଟ ହେଲାପରି
ପ୍ରୀତିମୟ ବସନ୍ତର ସୁବାସିତ
ମୁହୂର୍ତ୍ତଟିଏ ଲୋଡ଼ା ।
ମାର୍ଗଶୀରର ଶିଶିର ରଶ୍ମିରେ ଉଜ୍ଜ୍ୱଳ

ମଣିଷର ଜ୍ୱାଳାମୟ ଜଟିଳ ଜୀବନ କେନ୍ଦ୍ରକୁ
ଉଦ୍‌ଭାଷିତ କରି ପାରୁଥିବା
ଶସ୍ୟମୟ ମୁହୂର୍ତ୍ତଟିଏ ଲୋଡ଼ା।
ଦୁଧିଆଳି ଗାଈର ଚିର ପରି
ସ୍ନେହମୟୀ ଜନନୀର ପଣତ ପରି
ପ୍ରେମିକାର ନିରବ ଓଠ ପରି
ବନ୍ଧୁତାର ଦୃଢ଼ ହସ୍ତପରି ସଂପର୍କର ଶିଶିରରେ ଶିକ୍ତ
ପ୍ରାଣମୟ ମୁହୂର୍ତ୍ତଟିଏ ଲୋଡ଼ା ।
ନୈତିକତାରେ ନିପୀଡ଼ିତ
ଯୌନ ବିପର୍ଯ୍ୟୟଗ୍ରସ୍ତ ମଣିଷମାନଙ୍କ ପାଇଁ
ପ୍ରୀତିପୂର୍ଣ୍ଣ ସଂପର୍କର ପ୍ରେମମୟ
ମୁହୂର୍ତ୍ତଟିଏ ଲୋଡ଼ା ।
ଠୋକ୍‌ଠୋକ୍ ଭାବରେ
ଜୀବନ ଜିଇଁବାର ଅପାରଗତାରୁ
ଅର୍ଥ ଓ କ୍ଷମତା ଲୋଭରେ ଉବୁଟୁବୁ ହେଉଥିବା
ମୋକ୍ଷ ଚିନ୍ତା ଜାଲରେ ଛନ୍ଦି ହୋଇ ଯାଉଥିବା
ମୋହଗ୍ରସ୍ତ ମଣିଷମାନଙ୍କ ପାଇଁ
ମୋହାଚ୍ଛନ୍ନତା କବଳରୁ
ମୋହମୁକ୍ତିର ପର୍ବ ରଚନା କରି ପାରୁଥିବା
ଗତିଶୀଳ ଚେତନାର ଚିର ବସନ୍ତମୟ
ମୁହୂର୍ତ୍ତଟିଏ ଲୋଡା।
ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁ ମୁହୂର୍ତ୍ତ ମଣିଷର ହାତରେ
ଟେକି ଦେବ
ଯନ୍ତ୍ରବିଦ୍ୟା ବିବର୍ଜିତ ବିଜ୍ଞାନ
ପୁଞ୍ଜି ବିବର୍ଜିତ ଗଣତନ୍ତ୍ର
ସାମ୍ୟ ବିଜଡ଼ିତ ସମାଜବାଦ
ବୋମା ପରିବର୍ତ୍ତେ ବନ୍ଧୁ

ଯୁଦ୍ଧ ପରିବର୍ତ୍ତେ ଶାନ୍ତି
ଘୃଣା ପରିବର୍ତ୍ତେ ସ୍ନେହ
ଦାସତ୍ୱ ପରିବର୍ତ୍ତେ ମୁକ୍ତି
କାରାଗାର, ଶିକୁଳି, ପ୍ରତିମା ଭଙ୍ଗା
ମଣିଷମାନଙ୍କ ପାଇଁ
ସମ୍ବେଦଶୀଳତାର ସାର୍ଥକ
ମୁହୂର୍ତ୍ତଟିଏ ଲୋଡ଼ା...।
ମୁହୂର୍ତ୍ତଟି ଲୋଡ଼ା
ଯେଉଁଠି ସଂଗ୍ରାମର ସଂପର୍କ
ସଂପର୍କ ମାନେଇ ସଂଗ୍ରାମ
ସ୍ଥାଣୁ ଜୀବନଧାରାର ବିପରୀତରେ
ବିପ୍ଳବ ପରି ଭାରି
ଶକ୍ତ ଶବଳ
ସ୍ୱପ୍ନ ସୁନ୍ଦର ମୁହୂର୍ତ୍ତଟିଏ ଲୋଡ଼ା।
ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁଠି ନୀରବତା ହିଁ ସ୍ୱପ୍ନ
କୋଳାହଳ ମାନେ ହିଁ
ଉଦୀୟମାନ ଆକାଂକ୍ଷା;
ପାହାଡ଼ର ବୁକୁଚିରି
ପୃଥିବୀର ମାଟି ଫଟେଇ
ବୀଜପରି ସୂର୍ଯ୍ୟପରି
ସମୁଦ୍ରର ଗର୍ଭରୁ ମୁକୁଳି ଆସୁଥିବା
ଉଦୟଭାନୁର ଆଭାରେ ବିଭୂଷିତ
ଶାଶ୍ୱତ ମୁହୂର୍ତ୍ତଟିଏ ଲୋଡ଼ା ।
ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁଠି ଲଙ୍ଗଳ ହାତରେ ଚାଷୀ
ଟ୍ରାକ୍ଟର ଉପରେ ଯୁବକ
କଳ୍ପନାର ଭାଷାରେ କବି

ଚିନ୍ତା ଓ ଚେତନାରେ ଉତପ୍ତ ଦାର୍ଶନିକ
ଆବିଷ୍କାର ହାତରେ ବିଜ୍ଞାନୀ;
ଯେଉଁଠି ସ୍କୁଲ, କଲେଜ, ଅଫିସ୍ ଦପ୍ତର
ଫ୍ୟାକ୍ଟରୀ, ଫର୍ନେସ୍, ସହର ଓ ଗାଁ
କେଉଁଠି ହେଲେ ବି ମଣିଷ
ଭାତ ପାଇଁ ରୁଟି ପାଇଁ
ଚିତ୍କାର କରୁନି;
ଯେଉଁଠି ମଣିଷ ତା'ର
ପ୍ରିୟତମ ବ୍ୟକ୍ତିଟି ସହ,
ପ୍ରିୟତମ ଚିନ୍ତାଟି ସହ ମଜଗୁଲ
ସେଠି କେହି ଅର୍ଥ ପାଇଁ
ନୁହଁ ଲାଳାୟିତ
ନୁହଁ ପାଗଳ
ମଣିଷକୁ ଠକି,
ମଣିଷକୁ ଶୋଷଣ କରି
ମଲାଙ୍ଗ ଭଳି ଜୀଇଁବା ପରିବର୍ତ୍ତେ
ଶ୍ରମ ସଂପର୍କରେ ସ୍ୱାଧୀନତା ଆଣି ପାରୁଥିବା
ସ୍ୱାତଂତ୍ର୍ୟ ଭରା ସାର୍ଥକ ମୁହୂର୍ତ୍ତଟିଏ ଲୋଡ଼ା।
ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁଠି ମଣିଷ ସକାଳେ ମାଛ ଧରାଳି
ଦିବସରେ ଶ୍ରମିକ, ଅପରାହ୍ଣରେ
ସୀତାର ବାଦକ
ବୀଣା ଆଉ ବଂଶୀରେ ଜୀବନ ସ୍ୱର ସୃଷ୍ଟି
କରି ପାରୁଥିବା
ସଂଗୀତମୟ ମୁହୂର୍ତ୍ତଟିଏ ଲୋଡ଼ା ।
ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁଠି ପୃଥିବୀ ଈଶ୍ୱର ହୀନ
ଯେଉଁ ପୃଥିବୀରେ

ମଣିଷର ସଂଗ୍ରାଇ ମଣିଷ
ସେଇ ଈଶ୍ୱର ହୀନ ମଣିଷମୟ ପୃଥିବୀରେ
ମଣିଷକୁ ଏକତ୍ର କରି ପାରୁଥିବା
ଅକୁତୋଭୟ ମୁହୂର୍ତ୍ତଟିଏ ଲୋଡ଼ା ।
ମୁହୂର୍ତ୍ତର ରକ୍ତରେ ହୋରି ଖେଳନା କେହି
ମୁହୂର୍ତ୍ତରେ ଛାତିକୁ ବିଦାରି ପକାଅନା କେହି
ମୁହୂର୍ତ୍ତରେ ନୃଶଂସ ପଶୁ ଭଳି
ଅବିବେକୀ ମଣିଷ ଭଳି
ନାଚିବାକୁ ଚେଷ୍ଟା କରନା କେହି;
ମୁହୂର୍ତ୍ତକୁ ହାତ ମୁଠାରେ ରଖ
ମୁହୂର୍ତ୍ତକୁ ଖର୍ଚ୍ଚକର
ନିଜପାଇଁ ଓ
ନିଜ ଇଚ୍ଛାରେ
ଅନ୍ୟମାନଙ୍କ ପାଇଁ ।
ଅର୍ଥ ପାଇଁ ମୁହୂର୍ତ୍ତକୁ ନଷ୍ଟ କରନା
କ୍ଷମତା ପାଇଁ ମୁହୂର୍ତ୍ତକୁ ନଷ୍ଟ କରନା ।
ସମୟ ସଚେତନତାର ଅର୍ଥ
ବିମୂର୍ତ୍ତ ଶ୍ରମ ସଚେତନତା
ମିନିଟ୍ ଓ ଘଣ୍ଟାରେ ନିଜକୁ ବିଭକ୍ତ କରି
ବିଖଣ୍ଡିତ କରି
ଅନ୍ୟମାନଙ୍କ ପାଖରେ
ସଫଳ ଭାବରେ ବିକ୍ରି କରି
ପରିବାର ସଚେତନତା;
ଏପ୍ରକାର ସମୟ ଚିନ୍ତାକୁ ନେଇ
ଆମେ କେବେ
କବି ହୋଇ ପାରିବାନି, ଦାର୍ଶନିକ ହୋଇ
ପାରିବାନି, ଏପରିକି ସ୍ୱାଧୀନ ଭାବରେ
ସୃଜନଶୀଳତା ଓ ସ୍ୱାତଂତ୍ର୍ୟକୁ

ଜାହିର କରି ପାରିବାନି;
ଆମର ସମୟ ଏଠି ଆମର ନୁହଁ
ଆମେ ଯାହା ସବୁ ତିଆରି କରୁ
ଯାହାସବୁ ସଂପଦ ଉପୁଜାଉ
ତାହା ଆମର ନୁହଁ
ଅନ୍ୟ ମାନଙ୍କର;
ଆମେ କେବଳ ଭାଗୀଦାର ମଜୁରୀର
ସଂପଦର ନୁହଁ-
ତେଣୁ ସମୟ ସଚେତନା ଏଠି ମଜୁରୀ ସଚେତନା
କେବଳ ମଜୁରୀ ପାଇଁ କେତେଦିନ ଆମେ
ଖଟି ଚାଲିଥିବା
ନିଜର ମୁଣ୍ଡକୁ ବିକୁଥିବା; ଅନ୍ୟ ପାଖରେ
ଏପରି ଏକ ସମୟ କ'ଣ ଆସିବନି
ଯେଉଁଠି ଆମେ ଆମର
ଓ ଅନ୍ୟ ସବୁକିଛି, ଆମ୍ଭମାନଙ୍କ;
ମଣିଷକୁ ଯେ ବିକ୍ରି କରାଯାଏ
ତା'ର ଦେହ ଓ ମନକୁ ଯେ ଅନ୍ୟର
କାମରେ ଲଗାଯାଏ
ଏଭଳି ଏକ ବର୍ବର ବ୍ୟବସ୍ଥା କେବେ
ଲୋପ ପାଇବ ?
ଏସବୁ ପାଇଁ ମୁହୂର୍ତ୍ତଟିଏ ଲୋଡ଼ା
ଯେଉଁ ମୁହୂର୍ତ୍ତ
ତମର ନୁହଁ କି ଆମର ନୁହଁ
ବଜାରର ନୁହଁକି ମାଲିକର ନୁହଁ,
ସେ ମୁହୂର୍ତ୍ତ କେବଳ ମଣିଷର
ମଣିଷ ତା ନିଜ ପାଇଁ
ମୁହୂର୍ତ୍ତଟିଏ ସୃଷ୍ଟି କରିବ
* ନିଜେ ନିଜଠାରୁ ଅଲଗା ନହୋଇ

ନିଜେ ନିଜର ହେବ
ସେଇ ଆତ୍ମ ତୃପ୍ତିରେ ପରିପୂର୍ଣ୍ଣ
ରୋମାଞ୍ଚ ପୁଲକଭରା
ଚିତ୍ତ ଉଲ୍ଲାସକାରୀ ମୁକ୍ତି ଚେତନାର
ମର୍ମସ୍ପର୍ଶୀ ମୁହୂର୍ତ୍ତଟିଏ ଲୋଡ଼ା;
ଏବେ ଆଜିଠାରୁ ଏଇ ମୁହୂର୍ତ୍ତରେ
ମୁହୂର୍ତ୍ତର ମାନେ ହେଉ ଗତିମୟତା
ଓ ଗତିମୟ ମୁହୂର୍ତ୍ତର ଜୀବନ ପରିଧିରେ
ଯେଉଁ ମୁହୂର୍ତ୍ତର ନ ପଡୁ ଯବନିକା ।

❑❑❑

# ନିରବତାର କବିତା

ମୋତେ ନିରବତା ଦିଅ
ମୁଁ ତୁମକୁ ଦେବି ଶବ୍ଦ
ମୋତେ ଶବ୍ଦ ଦିଅ
ମୁଁ ତୁମକୁ ଦେବି ନିରବତା
ନିରବି ନଗଲେ ମଣିଷ ସଶକ୍ତ ଶବ୍ଦର
ଅଧିକାରୀ ହୋଇପାରେନା
ସଶକ୍ତ ଶବ୍ଦର ଅଧିକାରୀ ନହେଲେ
ମଣିଷ ନିରବି ଯାଏନା
ନିରବତା ଏକ ମନ୍ତ୍ର ଏକ ତପସ୍ୟା
ଏକ ସାଧନା
ନିରବତା ମାନବ ମନର ବିମୁଗ୍ଧ ବାସନା ।
ବେଶ୍ କିଛି ସଂଘର୍ଷ ଓ ପରାଜୟ ପରେ
ମଣିଷ ନିରବତା ଆଡ଼କୁ ମୁହାଁଏ
ବେଳେବେଳେ ପ୍ରତାରଣା ମଣିଷକୁ
ନିରବାଇ ଦିଏ ।
ନିରବତାର ନିରାଞ୍ଜନା କର ଦେଖିବ
ନାଦ ଧ୍ୱନି ତରଙ୍ଗମୟ ହୋଇ ଉଠୁଛି
ସଙ୍ଗୀତ ଉଛୁଳୁଛି ।
ଉଛୁଳୁଛି ଜୀବନର ଉଜାଣି ଯମୁନା
ଧୋଇ ସଫା କରି ଦେଉଛି

ଅହଂକାର ଆଟୋପର ସମସ୍ତ ନର୍ଦ୍ଦମା
ଅନୁତାପର ଅଶ୍ରୁରେ
ଦଗ୍‌ଧିଭୂତ ହେଉଛି
ମାନବ ମନର ମୂଢ଼ତା;
ନିରବତାଠାରୁ ସଶକ୍ତ ଶବ୍‌ଦ ବା
କାହିଁ ଏ ଦୁନିଆରେ
ସଶକ୍ତ ଶବ୍ଦର ଅଧିକାରୀ ହିଁ
କେବଳ ନିରବ ହୋଇପାରେ
ମସ୍ତିଷ୍କରେ ଅହରହ ସଂଘର୍ଷ ଜନୀତ
ସ୍ଥିତି ହିଁ ନିରବତା
କ୍ଷଣକର ନିରବତା ହିଁ
କୋଟିଏ ସଂଘର୍ଷର ଜନ୍ମଦାତା।
ବିପ୍ଳବ ଏକ ଜୁଲୁସ୍ ନୁହଁ
ଅନ୍ତରର ଅନଂତ ପ୍ରତିବାଦ
ଅନ୍ତରର ଅନନ୍ତ ପ୍ରତିବାଦ ହିଁ ବିପ୍ଳବ।
ନିରବତା ଫୁଲପରି ସୁନ୍ଦର,
ବୁଲେଟ୍ ପରି ଭୟଙ୍କର;
ନିରବତାର ବନ୍ଧୁକ ଚାଳନା
କରିବାକୁ ହେଲେ,
ବିପ୍ଳବ କ'ଣ ବୁଝିବାକୁ ହୁଏ
ବିପ୍ଳବ କ'ଣ ବୁଝିବାକୁ ହେଲେ
ନିରବତାର ବନ୍ଧୁକ ଚାଳନା
କରିବାକୁ ପଡ଼ିଥାଏ।
ବିପ୍ଳବ କେବଳ ନୁହଁ ଏକ
ବାରୁଦ ଓ ବୋମା
ବିପ୍ଳବ ନିରବତାର ନିରନ୍ତର ତର୍ଜ୍ଜମା ।
ନିରବତା ମାଧ୍ୟମରେ
ବିପ୍ଳବର ସାଧନା

କରାଯାଇ ପାରେ
ବିପ୍ଳବର ସାଧନାରେ ନିରବତା ହିଁ
ମନକୁ ଘାରେ ।
ନିରବତା ଏକ ସଶସ୍ତ୍ର ଅହିଂସା,
ସଶସ୍ତ୍ର ଅହିଂସା ହିଁ ନିରବତାର ହିଂସା ।
ପ୍ରେମ ଦେହରେ ନଥାଏ
ଥାଏ ମନରେ
ନିରବତା ମଧ୍ୟରେ
ତାହା ଉଙ୍କିମାରେ ।
ନିରବ ମଣିଷଟି ପ୍ରକୃତ ପ୍ରେମୀ
ପ୍ରକୃତ ପ୍ରେମୀ ହିଁ ରଚନା କରିଥାଏ
ନିରବତାର ଭୂମି ।
ପଳାୟନ କରୁଥିବା ମଣିଷଟି
କୋଳାହଳକୁ ଭଲପାଏ
କୋଳାହଳ ମଧ୍ୟରେ
ପଳାୟନ କରୁଥିବା
ମଣିଷ ମୁକ୍ତି ଚାହେଁ
ଏ ମୁକ୍ତି ସେ ମୁକ୍ତି ନୁହଁ
କୋଳାହଳ ମଧ୍ୟରେ ମିଳୁଥିବା ମୁକ୍ତି
ରଚନା କରେ ମୃତ୍ୟୁର ବ୍ୟୂହ
ପରାଜୟ ! କେବଳ ପରାଜୟ ।
ଅନୁଭୂତିରେ ଆର୍ଦ୍ର ନ ହେଲେ
ମଣିଷ ନିରବି ଯାଏନା
କଳ୍ପନାରେ ସିକ୍ତ ନ ହେଲେ
ମଣିଷ ନିରବତାର ଗୀତ ଗାଏନା;
ଅନୁଭୂତି ଓ କଳ୍ପନା ଠାରୁ
ବହୁ ଦୂରରେ ଥିବା
ମଣିଷମାନେ, କୋଳାହଳକୁ

ଭଲ ପାଅନ୍ତି
ହୋ ହଲ୍ଲାକୁ ପସନ୍ଦ କରନ୍ତି
କାରଣ ଏକୁଟିଆ ହୋଇଗଲେ
ସେମାନେ ନିରାଶ୍ରୟ ।
ଯେହେତୁ ସେମାନଙ୍କ ପାଖରେ
ନଥାଏ ଅନୁଭୂତିର ସଂଚୟ;
ତେଣୁ କୋଳାହଳ ହିଁ ସେମାନଙ୍କ
ପାଇଁ ଜୀବନ
ନିରବତାରେ ନଥାଏ
ସେମାନଙ୍କର ମନ ।
ଈଶ୍ୱରଙ୍କ ଆରାଧନା କରିବା ମଧ୍ୟ
ଏକ ପଳାୟନ
ନିରବତାକୁ ସାଧି ନପାରିବାର
ଓଲଟ ସଂକ୍ରମଣ ।
ପୂଜା ପାଠ, ଜପତପ,
ସବୁ ନିରବି ଯିବାର ବାହାନା
ପ୍ରକୃତ ନିରବତା ପୂଜା ପାଠ,
ଜପ ତପରୁ ଆସେନା ।
ପ୍ରକୃତ ନିରବତା ଆସେ
ମଣିଷର ଉପଲବ୍‌ଧିରୁ
ସତ୍ୟର ଶିଳାମୟ ସ୍ତର ଭେଦର
ପ୍ରୟାସ ଭିତରୁ ।
ନିରବି ନଗଲେ ମଣିଷ ସତ୍ୟର
ସନ୍ଧାନ ପାଏନା,
ସତ୍ୟର ସନ୍ଧାନ ନ ପାଇବାଯାଏ
ମଣିଷ ନିରବି ଯାଏନା ।
କେଉଁ ବଦମାସ୍‌କୁ ତମେ
ଢ଼େଲା ଫିଙ୍ଗିବ

କେଉଁ ପାପୀକୁ ତମେ ପନିସ୍‌ମେଣ୍ଟ ଦେବ
ସମସ୍ତେତ ଗୋଟେ ଗୋଟେ
ନିରୀହ ଛାଗଳ ।
ନିରବ ମଣିଷର ମସ୍ତିଷ୍କରୁ
ଉତ୍‌ପତ୍ତି ଲାଭ କରେ କରୁଣା
ଦଣ୍ଡ ଦେଲାବେଳେ, ଦରମା ନିର୍ଭର
ବିଚାରକ ପରି
ହୁଏନା ସେ ବାଟବଣା ।
ନିରବ ମଣିଷଟି ନୁହଁ ଗୁଣ୍ଡା ବା ଦଲାଲ,
ଚୋର ବା ତସ୍କର
ନେତା, ମନ୍ତ୍ରୀ କିରାଣି,
ଅଫିସର-ଅଥବା ମାଷ୍ଟର
ନିରବ ମଣିଷଟି ହୋଇପାରେ
ଏକ ଶିଶୁ ଅଥବା ଈଶ୍ୱର ।
ନିରବ ମଣିଷଟି ଲାଂଚ ଖାଏନା,
ଫାଇଲ୍ ଲୁଚାଏନା,
ହାକିମାତି ଦେଖାଏନା
ହାତପାତି ମାଗେନା, ଲୁଣ୍ଠନ ଓ ଶୋଷଣ
ଲବ୍ଧ ଧନରେ ଇମାରତ ଗଢ଼େନା ।
ନିରବ ମଣିଷଟି ଖିଦ୍‌ମତ୍‌ଗାର
ସଚ୍ଚା, ଇମାନଦାର
ସରାରତ ବା ହକିକତକୁ ନଥାଏ ତାର ଖାତର
ସେ ଜେହାଦ୍‌ର ଚର ।
ନିରବ ମଣିଷ ନୁହଁ ସ୍ଥାଣୁ, ଅଥବା
ତଥାକଥିତ ଭାବରେ ଚଂଚଳ,
ନିରବ ମଣିଷଟି କର୍ମ ମୁଖର;
କର୍ମ ନୁହଁ ତା' ପାଇଁ ବଂଚିବାର ବାହାନା ବା
ପଇସା ରୋଜଗାର ଫନ୍ଦି

କର୍ମ ତା' ପାଇଁ ଆନନ୍ଦର ଉପଲବ୍ଧି ।
ନିରବ ମଣିଷଟି ଲକ୍ଷ୍ୟ ସ୍ଥିର କରେ ପୁଣି ଭାଙ୍ଗେ
ଗୋଟାଏ ଲକ୍ଷ୍ୟ ପଥରେ ପହଂଚିଲା ପରେ
ଅନ୍ୟ ଏକ ଲକ୍ଷ୍ୟକୁ ଅଣ୍ଡାଳେ
ଯାତ୍ରା ତାର ଅସରନ୍ତି କେବେ ନସରେ ।
ନିରବତା ଆଣିଦିଏ ମଣିଷ ପାଇଁ
ବଂଚିବାର ପ୍ରେରଣା
ନିରବତା ମଣିଷ ମନର
ଶୁଦ୍ଧ ସୁବର୍ଣ୍ଣ ଯନ୍ତଣା
ଆନନ୍ଦର ଅଗ୍ନିମୟ ପରି ପ୍ରକାଶ ।
ନିରବତା ଜଳ ଆଉ ଜ୍ୟୋତି
ନିରବତା ଜୀବନ ଜିଇଁବାର ଭାସ୍ୱର ପ୍ରତିଶ୍ରୁତି
ନିରବତା ପାଖରେ ନଥାଏ ଛଳନା
ଦୁଃଖ ଓ ଯନ୍ତଣା
ଦାରିଦ୍ର୍ୟ ଓ ଅଭାବ, ଶୋକ ଆଉ ରୋଗ ।
ଲୋଭୀ ମଣିଷଟି ନିରବ ହୋଇ ପାରେନା
ସ୍ୱାର୍ଥପର ମଣିଷଟି ନିରବି ଯାଏନା
ରାଜ୍ୟଚ୍ୟୁତ ହେବାର ଆଶଙ୍କାରେ
ଯେମିତି କଟୁଥାଏ
ଅତ୍ୟାଚାରୀ ରାଜାର ଜୀବନ
ସେଇମିତି ଲୋଭୀ ମଣିଷର ମନ
ନିଜ ବିପକ୍ଷରେ ନିଜେ ଏକ ଶତ୍ରୁ ।
କୋଳାହଳର ମଣିଷ ମୃତ୍ୟୁକୁ ଡରେ,
ବାର ବାର ମରେ, ପୁଣି ଜିଏଁ ପୁଣି ମରେ
ନିରବ ମଣିଷ ମରଣଜୟୀ
ଯେହେତୁ ମୃତ୍ୟୁ ତା'ର
ଅତି ଆପଣାର ।
କୋଳାହଳର ମଣିଷ

ଅଭ୍ୟାସ ବଶତଃ ଜ୍ଞାନୀ
ଦର୍ଶନ ଭୀରୁ ଯୁକ୍ତି ନିର୍ଭର
ଅହଂକାର ଲିପ୍ତ ପଂଡ଼ିତ ପ୍ରବର
ନିରବତାର ମଣିଷ ସତ୍ୟ ସନ୍ଧାନୀ
ଅନୁସଂଧିତ୍ସୁ ଜିଜ୍ଞାସୁ- ଦର୍ଶନ ପର ।
ନିରବତାର ଦର୍ଶନ ବିଜ୍ଞାନ
ନିରବତାର ବିଜ୍ଞାନ ଦର୍ଶନ
କୋଳାହଳ ବିଜ୍ଞାନ ପ୍ରଯୁକ୍ତି
ଧନବାଦ ସହ ଯାହାର
ଗୋପନ ଚୁକ୍ତି ।
ନିପୀଡ଼ିତ ଜନଗଣ ବେଳେବେଳେ
ନିରବ ହୋଇଯାନ୍ତି
ନିପୀଡ଼ିତ ଜନଗଣ ବେଳେବେଳେ
କୋଳାହଳକୁ ଭଲପାନ୍ତି
ନିପୀଡ଼ିତ ଜନଗଣର ନିରବତା ମଧ୍ୟରୁ
ଜନ୍ମନିଏ ବିପ୍ଳବ
ନିପୀଡ଼ିତ ଜନଗଣର ଶବ; ଆଣିଦିଏ ଯୁଗାନ୍ତର
ଆପାତତଃ ଶାନ୍ତି ଓ ନିରବତା ।
ବିପ୍ଳବ ପରେ ବେଳେ ବେଳେ ଆପାତତଃ
ଶାନ୍ତି ଓ ନିରବତା ଥମିଯାଏ
ଶୋଷଣର ମାତ୍ରା ପୁଣି ବଢ଼ିଯାଏ
ମଣିଷର ମନ ହୁଏ ଅସ୍ଥିର
ତା’ ଭିତରୁ ସୃଷ୍ଟି ହୁଏ ନିରବତାର ସ୍ୱର
ଯାହାର ପରିଣତି ଯୁଗାନ୍ତର
ପୁଣି ନିରବତା, ପୁଣି ବିପ୍ଳବ
ଏହା ହିଁ ତ ଇତିହାସର ଅନିବାର୍ଯ୍ୟ ପରିଣତି ।
ଅଧିକାଂଶ ମଣିଷ କାହିଁକି
କୋଳାହଳକୁ ଭଲ ପାଆନ୍ତି .

ଅଧିକାଂଶ ମଣିଷ କାହିଁକି
ନିରବ ହୋଇନଯାଆନ୍ତି
ଏହାର ଉତ୍ତର ମଣିଷଙ୍କୁ ପଚାର
ମଣିଷ ହିଁ ମଣିଷ ପାଇଁ ଏକମାତ୍ର ସତ୍ୟ
ମଣିଷ ହିଁ ମଣିଷର ଏକମାତ୍ର ସମାଧାନ
କବି ଓ କବିତା / ଉପଲକ୍ଷ୍ୟ ମାତ୍ର ।
ନିରବତାର ଦର୍ଶନ କହେ
କୋଳାହଳ ମଧ୍ୟରେ ମଣିଷର
ସ୍ନାୟୁ ସଂକଟର ସୁଲଭ ସମାଧାନ ହୁଏ
ସେଥିପାଇଁ ମଣିଷ
କୋଳାହଳକୁ ଭଲପାଏ
ନିଜ ସୃଷ୍ଟ ସମାଧାନର ଆସୁରିକ
ହଳାହଳ ପାନ କରି ନିଜେ ମତ୍ତ ହୁଏ ।
ଶୋଷଣ ମୂଳରେ ଅଛି ଧନବାଦୀ
ଦୁନିଆର ପୁଞ୍ଜି ପ୍ରବଣତା
ଏହା ହିଁ ଆମକୁ ଶିଖାଇ ଥାଏ ନିରବତା ।
ହୋଇପାରେ ତାହା କେଉଁ
ଧନୀ ଗରିବର;
ଅଥବା ତଥାକଥିତ ଓ ଧର୍ମ ନେତାଙ୍କର
କିନ୍ତୁ ସବୁରି ଭିତରେ ମଣିଷର ଆଳସ୍ୟ
ମଣିଷକୁ କରିଥାଏ ଭୀରୁ କାପୁରୁଷ ।
ନିରବତାର ଭାଷାକୁ ବୁଝି ନପାରିବାରୁ
ଅର୍ଜୁନକୁ ଗୀତାରେ କୃଷ୍ଣ କ'ଣ କହିଥିଲେ
"ଆହେ ମୂଢ଼ ଜନ ପ୍ରତିନିଧି ଅର୍ଜୁନ
ଧିକ୍ ତମ କାର୍ମୁକ ଟଙ୍କାର
ମୁଁ ଯାହା କହୁଛି ତମେ ବୁଝ ବା ନ ବୁଝ
ଆଖି ବୁଜି ମୋତେ ଅନୁସରଣ କର
ମୁଁ ହିଁ କର୍ମଜ୍ଞାନ, ମୁଁ ଅଟେ ଈଶ୍ୱର

ତୁମେ ଯଦି ନହୁଅ ମୋର ସମାନ
ମୋତେ ଅନୁସରଣ କର
ତୁମ ପୂର୍ବ ଅର୍ଜିତ ଧରଣୀମାନଙ୍କୁ
ତ୍ୟାଗକରି ହୁଅ ମୋର ଶରଣାପନ୍ନ ।”
କୋଳାହଳ ମଣିଷମାନେ ବୁଝନ୍ତୁ ବା ନ ବୁଝନ୍ତୁ
ନେତୃତ୍ୱର ଶରଣାପନ୍ନ ହୋଇଥାନ୍ତି
ବେଳେବେଳେ ସେମାନଙ୍କ ଜରିଆରେ ସାମାଜିକ କ୍ରାଂତି ଆସେ
ବିପ୍ଳବ ଜନ୍ମନିଏ ।
ନିରବତା ମଣିଷକୁ ଯୋଗାଏ ଦିଏ
ସ୍ୱଚ୍ଛ ଚେତନା
କୋଳାହଳ ଓଲଟ ବିଶ୍ୱର ସଂରଚନା
ପ୍ରକୃତି ଠାରୁ ପଳାୟନ
ରାଷ୍ଟ୍ର ଓ ସମାଜ ନାଁରେ
ମଣିଷ ଦ୍ୱାରା ମଣିଷର
ଶୋଷଣ, ଶାସନ
କୋଳାହଳ ଓଲଟ ଚେତନାର
ବିଶ୍ୱୀକରଣ
ଏସବୁ ପାଖରେ
ନିରବତାର କାହିଁବା ସ୍ଥାନ ?
ଓଲଟ ବିଶ୍ୱର
ଓଲଟ ଚେତନାର ବଶବର୍ତ୍ତୀ ମଣିଷ
କୋଳାହଳକୁ ଭଲପାଏ
ସ୍ଥାଣୁତାର ଶିକାର ହୁଏ
ମସ୍ତିଷ୍କକୁ ଛଣରେ ସଜାଏ
ଫଳତଃ ହାଟରେ ବାଟରେ
ବଜାର ଘାଟରେ
ସ୍କୁଲ୍, କଲେଜ, ଅଫିସ୍, ଦପ୍ତରେ
ମଶାଣି ଓ ଶବାଧାରେ ମନ୍ଦିରରେ

ମଣିଷର ଆବଶ୍ୟକ ହୁଏ କୋଳାହଳ ।
ପ୍ରକୃତ ବିଶ୍ୱର ଚେତନା ଦର୍ଶନର ଚେତନା
ନିରବତାର ବିମୂର୍ତ୍ତ ଭାବନା ।
ଓଲଟ ବିଶ୍ୱର ମଣିଷ ଦାର୍ଶନିକ
ଚେତନାକୁ ଭୟପାଏ;
ବିମୂର୍ତ୍ତ ଭାବନାର ଅଭାବରୁ
ବଜାର ବିଶ୍ୱ ପ୍ରେରିତ ସ୍ନାୟୁ ସୁଖକୁ
ଆଦରି ନିଏ ।
କୋଳାହଳ ଭିତରେ
ବଂଚିଥିବା ମଣିଷ ପାଇଁ
ଈଶ୍ୱର ନିପୀଡ଼ିତର ହାହାକାର
ହୃଦୟହୀନ ପୃଥିବୀର ହୃଦୟ,
ଆତ୍ମାହୀନ ପରିବେଶର ଆତ୍ମା
ଏହା ହିଁ ସେମାନଙ୍କର ଅଫିମ ନିଶା ।
କୋଳାହଳ ମଣିଷ କିନ୍ତୁ
ଅଫିମ ନିଶାକୁ ଭଲପାଏ
ଅଫିମ୍ ନିଶାରେ ନିଦଯାଏ
ତା' ପରେ ଆରମ୍ଭ ହୁଏ ମଣିଷ ଉପରେ
ମଣିଷର ଶାସନ, ଭାଗ୍ୟ ଭଗବାନ
ଭଲ ମନ୍ଦ, ପାପ ପୂଣ୍ୟ ପୂର୍ବଜନ୍ମ
ପରଜନ୍ମ
ମଣିଷ ପାଇଁ ଏହା ବାସ୍ତବତା ଠାରୁ ପଳାୟନ
କୋଳାହଳ ମଧ୍ୟରେ ନିଜ ପାଇଁ ମୃତ୍ୟୁକୁ ଆମନ୍ତ୍ରଣ
ନିଜ ଦ୍ୱାରା ନିଜର ହନନ, ନିଜର ବର୍ଜନ
ଦ୍ୱିଧା ବିଭକ୍ତ ବ୍ୟକ୍ତିତ୍ୱରେ ଗ୍ରସ୍ତମନ ।
କୋଳାହଳ ଓଲଟ ପୃଥିବୀର ଯନ୍ତ୍ରଣା
ନିରବତା ଚକିତ ବିଶ୍ୱର ସଂରଚନା
ଓଲଟ ବିଶ୍ୱର ମଣିଷମାନେ

ବିଶ୍ୱ ବ୍ରହ୍ମାଣ୍ଡକୁ ବୁଝିବାରେ
ସଳଖ ରାସ୍ତାକୁ ପରିତ୍ୟାଗ କରି
ବାସ୍ତବତାଠାରୁ ପଳାୟନ କରନ୍ତି
ଅହରହ ପ୍ରସ୍ଥାନ ପଥ ଅଣ୍ଡାଳନ୍ତି
ମୃତ୍ୟୁକୁ ଆଦରି ନିଅନ୍ତି;
କୋଳାହଳ ମଣିଷକୁ ନିର୍ବେଦ ଓ
ନିଶ୍ଚେଷ୍ଟ କରିଦିଏ
ନିରବତା ମଣିଷକୁ କର୍ମ ଓ
ଜ୍ଞାନରେ ଦୀକ୍ଷିତ କରାଏ
ଶୋଷଣ ବିରୁଦ୍ଧରେ ବିପ୍ଳବର
ପ୍ରେରଣା ଯୋଗାଏ
ଯାହା ଭିତରେ ତମେ ଶୁଣି ପାରିବ
ନିରବତାର ସ୍ୱର
ଜୀବନପାଇଁ
ମୃତ୍ୟୁକୁ ବରଣ କରିବାର ଶାଶ୍ୱତ ଅହଂକାର ।
ନିରବ ମଣିଷଟି ଜାଣି ଜାଣି ମୃତ୍ୟୁକୁ ବରଣ କରେ
ନିରବ ମଣିଷଟି ଜାଣି ଜାଣି ମିଛବି କହିପାରେ
ନିରବ ମଣିଷ ପାଇଁ ଯନ୍ତ୍ରଣା ଓ ଆତ୍ମତ୍ୟାଗ
ସବୁକିଛି ନିରବତାର ରୂପାନ୍ତର ।
ନିରବ ନହେଲେ କେହି କେବେ କବି ହୁଏନା
ନିରବ ନ ହେଲେ କେହି କେବ ବିପ୍ଳବ କରେନା
ନିରବ ନହେଲେ କେହି କେବେ ଗୀତ ଗାଏନା;
କୋଳାହଳର କବିତା କବିତା ନୁହଁ
କୋଳାହଳର ବିପ୍ଳବ ବିପ୍ଳବ ନୁହଁ
ସବୁଠିତ କ୍ରେତା ଓ କ୍ଷମତା
କେଉଁଠିବା କାହିଁ ମଣିଷ ପାଇଁ ନିରବତା ?
ନିରବତାକୁ ସାଉଁଟି ନେବାକୁ ହୁଏ ପବନରୁ
ନିରବତାକୁ ସାଉଁଟି ନେବାକୁ ହୁଏ ଗଗନରୁ

ନିରବତାକୁ ସାଉଁଟି ନେବାକୁ ହୁଏ ଜୀବନରୁ
ସମ୍ବେଦନଶୀଳତା ଓ ଏକାକୀତ୍ୱ ବୋଧର
ଯନ୍ତ୍ରଣା ଭିତରୁ ।
ଶୋଷଣ ସଂପର୍କିତ ଅନୁଭବ
କେତେଜଣ ବିପ୍ଳବୀର ବା ଥାଏ
ଶୋଷଣର ସଂପର୍କିତ ଅନୁଭବ
କେତେଜଣ ସର୍ବହରାର ବା ଥାଏ
ସେଥିପାଇଁ ବେଳେ ବେଳେ ସର୍ବହରା ବିପ୍ଳବ
ଥମିଯାଏ କୋଳାହଳରେ ।
ନିରବତାରେ ଦର୍ଶନ କହେ ସମାଜ
ମୁକ୍ତ ଉତ୍ପାଦନକାରୀ ମାନଙ୍କର ସଂପର୍କ
ଯେଉଁଠି ମଣିଷ ସକାଳେ
ମାଛଧରାଳି ଦିବସରେ
ଶ୍ରମିକ, ଅପରାହ୍ନରେ ସିତାର ବାଦକ ।
ନିରବତାର ଦର୍ଶନ ଅନୁପ୍ରେରିତ କରେ,
ମଣିଷ ମଧ୍ୟକୁ ପ୍ରକୃତିର ପ୍ରତ୍ୟାବର୍ତ୍ତନ
ପ୍ରକୃତିର ମଣିଷାୟନ ।
ମାନବତାର ବାନା ଧରିଥିବା
ମଣିଷମାନେ ହୋଇ ପାରନ୍ତି ମାନୀ
ଗଣତନ୍ତ୍ରର ବାନା ଧରିଥିବା
ମଣିଷମାନେ ହୋଇପାରନ୍ତି ଧନୀ
ଏମାନଙ୍କ ମଧ୍ୟରେ ଶୁଣିବାକୁ ମିଳେନା
କିନ୍ତୁ ନିରବତାର ପ୍ରତିଧ୍ୱନି ।
ନିରବତା ପାଖରେ ନଥାଏ ନାମାବଳୀ
ଅଥବା କୋଥଳି
ବ୍ୟାଙ୍କ ବାଲାନ୍ସ ଅହମିକା ଓ ରାଜ କ୍ଷମତା ।
ନିରବତା ଏକ ନହକା ବାଉଁଶ,
କ୍ଷଣେ ବକ୍ର କ୍ଷଣେ ଉଦ୍ୟତ ।

ନିରବତା ରକ୍ତ ଧ୍ୱଜ ନେତ ଓ ଜଳ ପ୍ରପାତ
ମୁନିର ତପସ୍ୟା ପକ୍ଷୀର କାକଳି
ଆକାଶର ନୀଳିମା ଧରିତ୍ରୀର ସବୁଜିମା
ଚନ୍ଦ୍ରର ଜୋଛନା ଶିଶୁର ଦରୋଟି
ଝରଣାର କୁଳୁକୁଳୁ ଗାନ
ନଦୀର ନିଃସ୍ୱନ ସମୁଦ୍ରର ସ୍ୱନ
ଗର୍ଜନ ଗର୍ଜନ ।
ନିରବତା ପାଖରେ ନାଉରିଆ
ବୁଦ୍ଧ, ବୁଦ୍ଧ ନାଉରିଆ
ପ୍ରତୀକ୍ଷାର ନହୁଏ ଯେ ଅନ୍ତ ।
ନିରବତା ଆଣିଦିଏ ପରିବର୍ତ୍ତନ
ନିରବତା ମଣିଷକୁ କରେ ଆୟୁଷ୍ମାନ
ନିରବତା ମଧ୍ୟରେ ସତ୍ୟର ସନ୍ଧାନ
କବିତା ଦର୍ଶନ
ଧ୍ୱନି ଓ ବିଜ୍ଞାନ
ଜିଜ୍ଞାସା ନିରବତାର ଅନ୍ୟ ନାମ।
ନିରବତାର କବିତା ଏଇଠି ହେଉ ନିରବ
ଏବେ ନିରବତା ମଧ୍ୟରୁ ଆସୁ
ନିରବତାର ଅନୁଭବ।

❑❑❑

# ଅଣୁଯୁଦ୍ଧ ବିପକ୍ଷରେ

ଅଣୁଯୁଦ୍ଧ କଥା ଯେ କହୁଛି
ତା' ପାଟିରେ ତାଲା ପକାଅ
ତା' ଜିଭରେ ଲଗାମ ଲଗାଅ;
ସେ ଏକ ଉନ୍ମାଦ ଅଥବା ପାଗଳ
ତା'ର ମସ୍ତିଷ୍କର ଦରକାର ଅସ୍ତ୍ରୋପଚାର;
ସେ ଜାଣି ନାହିଁ ପରମାଣୁ ବିକିରଣର କ୍ଷମତା
ସେ ଦେଖିନାହିଁ ନାଗାସାକୀ-ହିରୋସୀମାର ବିଭୀଷିକା
ଏ କବିତାର ପାଠକ ମାନଙ୍କୁ ମୁଁ କିପରି ବୁଝାଇବି ଯେ
ଅଣୁଯୁଦ୍ଧ କେତେ ଭୟଙ୍କର;
ଅଣୁ ଯୁଦ୍ଧ କ'ଣ ସେମାନେ ନିଜେ ବୁଝନ୍ତୁ
ଓ ଅଣୁଯୁଦ୍ଧ ଭିଆଇବାକୁ ଚାହୁଁଥିବା ଶାସକଙ୍କୁ
ସେ ଯେଉଁ ଦେଶର ହେଉନା କାହିଁକି ?
କ୍ଷମତାଚ୍ୟୁତ କରାନ୍ତୁ
ସେମାନଙ୍କ ହାତରୁ ଅଣୁ ବୋତାମ ଛଡ଼ାଇ ଆଣନ୍ତୁ ।
ତା' ନହେଲେ ପୃଥିବୀ ଧ୍ୱଂସ ଯିବ
ଅଣୁ ଯୁଦ୍ଧ ଭିଆଇବାକୁ ଚାହୁଁଥିବା ଲୋକଟି
ନିଜେ ବି ମରିବ ଓ ଅନ୍ୟକୁ ମାରିବ
ପୃଥିବୀରୁ ଅମ୍ଳଜାନ, ଉଦ୍‌ଭିଦ ଓ ଜୀବସତ୍ତାର
ବିନାଶ ଘଟିବ ।
ଅଣୁଯୁଦ୍ଧ ଭିଆଇବାକୁ ଚାହୁଁଥିବା ଲୋକଟି

ଏକ ଗଣମାରଣକାରୀ ଜହ୍ଲାଦ
ନିଆଁର ମାନେ କ'ଣ ଜାଣିନଥିବା ମଣିଷ
ଗୃହରେ ନିଆଁ ଲଗାଇ ଦେଇ
ଗୃହବାସୀଙ୍କୁ ଦେଖାଇବାକୁ ଚାହେଁ
ଘର ପୋଡ଼ିର ଦୃଶ୍ୟ ।
ସେ ନିଜକୁ କହେ ଦେଶଭକ୍ତ
ଅଥଚ ବୁଝେନା ଦେଶ ଭକ୍ତିର ଅର୍ଥ ।
ଦେଶ ଭକ୍ତିର ଅର୍ଥ ନୁହଁ ଦେଶ ପାଇଁ
ଯୁଦ୍ଧକୁ ଡାକି ଆଣିବା
ଯୁଦ୍ଧଖୋର ଭାବନାରେ ଦେଶବାସୀଙ୍କୁ
ଯୁଦ୍ଧୋନ୍ମାଦ କରି ଗଢ଼ି ତୋଳିବା ।
କିଛି ଲୋକ ଭାବିଥାନ୍ତି ଅଣୁଯୁଦ୍ଧ କ'ଣ
ସତରେ ହେବ ?
ନହେଲେ ତ ଭଲ ! କିନ୍ତୁ ବାସ୍ତବତା ଯାହା
ତୁଣ୍ଡର କଥା ଯେ ସତ ନହେବ, କିଏବା କହିବ ?? *

❑❑❑

*ଭାରତୀୟ ଉପମହାଦେଶରେ ଅଣୁଯୁଦ୍ଧର ବାତାବରଣ ସୃଷ୍ଟି ହୋଇଥିଲା ବେଳେ, ପାକିସ୍ତାନର ପ୍ରଧାନମନ୍ତ୍ରୀ ଇମ୍ରାନ ଖାନ୍‌ଙ୍କର ଭାରତ ବିପକ୍ଷରେ ଅଣୁଯୁଦ୍ଧର ଧମକ ସମ୍ବାଦ ପଢ଼ିଲା ପରେ ।*

## ପ୍ରତ୍ୟୟ

ବିଶ୍ୱାସର ଘରେ ତାଲା ପକାଇ
ସଂପର୍କକୁ ବଢ଼ା ଯାଇ ପାରେନା
ବିନା ପ୍ରତିବାଦରେ ସଂଘର୍ଷର ରାସ୍ତା ଖୋଲେନା
ସତର୍କତା ଅବଲମ୍ବନ କରି
ସତ୍ୟର ଅନ୍ୱେଷଣ କରାଯାଏନା
ସତ୍ୟାନ୍ୱେଷୀ ମଣିଷ ହାତେ ମାପି
ଚାଖଣ୍ଡେ ଚାଲେନା;
ଆକାଶର ରଂଗ ନୀଳ
ପୃଥିବୀ ସଂଘର୍ଷଶୀଳ
ବିଦ୍ୟୁତ୍ ଘଡ଼ଘଡ଼ି ପରେ ମେଘବର୍ଷା
ସବୁକିଛି ସଂଘର୍ଷର ଫଳ।
ନିଜ ଉପରେ ବିଶ୍ୱାସ ରଖ ମଂଚ ଖୋଲିଯିବ
ତା' ପରେ ଆରମ୍ଭ ହେବ ଅଭିନୟ ପର୍ବ
ଜୀବନ ନାଟକର
ବ୍ୟାପକ ଓ ବିଶାଳ ଏଇ ରଙ୍ଗମଞ୍ଚରେ
ଅଭିନୟ ଚାଲିଥିବ; ଜୀବନ ଶେଷ ହେବାଯାଏ।
ସଂଘର୍ଷ ବିନା ଜୀବନ ନୁହଁ ମଧୁମୟ
ସଂଘର୍ଷ ପାଇଁ ଲୋଡ଼ା ସାଥୀତ୍ୱ
ସଂଘର୍ଷଶୀଳ ମଣିଷ ଚାହେଁନା ଅମରତ୍ୱ।
ବର୍ତ୍ତମାନ ପାଇଁ ଜୀବନ ଜିଇଁବାରେ

ସଂଘର୍ଷଶୀଳ ମଣିଷ ଧୁରନ୍ଧର
ଆଗାମୀ ପିଢ଼ି ପାଇଁ ସେ ରଖିଯାଏ
ଜୀବନର ସ୍ୱାକ୍ଷର, ଜୀବନ୍ତ ଏକ ଜୀବନର ।
ଜୀବନର ମଧୁପିଇ ମତୁଆଲା ହୁଅ
ପ୍ରତ୍ୟୟ ଓ ଆତ୍ମ ବିଶ୍ୱାସରେ ଜୀବନ ଭରିଦିଅ
ତୁମ ପାଇଁ ଯିଏ ଭରସା ସୃଷ୍ଟି କରିପାରିଛି
ତୁମେ ତାକୁ ସାଥୀତ୍ୱର ହାତ ବଢ଼ାଇ ଦିଅ ।
ବିଶ୍ୱାସର ଘରେ ତାଲା ପକାଇ
ସଂପର୍କର ବଢ଼ାଯାଇ ପାରେନା
ବିନା ସଂଘର୍ଷରେ ସତ୍ୟର ରାସ୍ତା ଖୋଲେନା
ବିବିଧ ଅନୁଭୂତି ଭରା ଏଇ ଜୀବନ
ବିବିଧ ସଂପର୍କକୁ ନେଇ ଗଢ଼ା ଏଇ ମନ ।
ସ୍ନେହ, ପ୍ରେମ ଭଲ ପାଇବା ନାନାବିଧ
ଜୀବନ ପାଇଁ ଆବଶ୍ୟକ ଏକ ଜୀବନ ବୋଧ ।
ସୀମିତ ଏ ଜୀବନ ପରିଧି ଭିତରେ
ଜୀବନକୁ ବୁଝିବାରେ ସାମାନ୍ୟ ବିଳମ୍ବ କଲେ
ଜୀବନ ଜିଇଁବା କ୍ଷେତ୍ରରେ ଭୁଲ ହୋଇଯିବ
ନିଜ ଭିତରେ ସୃଷ୍ଟି ହେବ ଆତ୍ମବିଶ୍ୱାସର ଅଭାବରୁ
ନିଜ ପାଖରେ ନିଜେ ହାରିଯିବ ।
ବିନା ସାଧନା ଓ ସଂଘର୍ଷରେ
ମଣିଷ ଜିଇଁପାରେ ଏକ ଘଷରା ଜୀବନ
ପୂର୍ବାଗ୍ରହ ଦ୍ୱାରା ବଶବର୍ତ୍ତୀ ମଣିଷର ମନର ଗତି ମନ୍ଥର
ଶ୍ରମ, ବିପ୍ଳବ, ସଂଘର୍ଷ ବିନା ଜୀବନ ସ୍ଥାଣୁ ଓ ସ୍ଥିର
ଜୀବନର ଖେଳ ପଡ଼ିଆରେ
ଜୀବନ ଏକ ହାରିବା ଓ ଜୀତିବାର ଖେଳ ।
ବିଶ୍ୱାସର ଘରେ ତାଲା ପକାଇ
ସଂପର୍କକୁ ବଢ଼ାଯାଇ ପାରେନା
ବିନା ପ୍ରତିବାଦରେ ସଂଘର୍ଷର ରାସ୍ତା ଖୋଲେନା ।

❑❑❑

# ଧର୍ମ ଓ ରାଜନୀତି

ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସ
ଧର୍ମରେ ବିଶ୍ୱାସ ନ କରୁଥିବା ମଣିଷଟି
ନାସ୍ତିକ;
ନାସ୍ତିକ ମଣିଷଟି ନୁହେଁ ଧର୍ମଦ୍ରୋହୀ
ପରନ୍ତୁ ନାସ୍ତିକର କୌଣସି ଧର୍ମ ନାହିଁ।
ଧର୍ମୀୟ ଘୃଣା ଏକ କୁସଂସ୍କାର
ଓ ଅମାନବୀୟ ଭାବ
ଧର୍ମ ନାଁରେ ହିଂସା ଭିଆଇଥିବା ଲୋକକୁ
କିଏ ବା କ୍ଷମା ଦେବ ?
ପୁଞ୍ଜି ସହ ଧର୍ମର ସଂପର୍କ
ବ୍ୟକ୍ତିସ୍ୱାର୍ଥ ବିଜଡ଼ିତ
ଧର୍ମ ସଦା ସର୍ବଦା ପୁଞ୍ଜିବାଦର ସେବକ;
ଧର୍ମକୁ ପୁଞ୍ଜିଠାରୁ ଅଲଗା କରିଦେଲେ
ସୃଷ୍ଟି ହେବ ସମତା ପୂର୍ଣ୍ଣ ସମାଜ
ଧର୍ମକୁ ନିଜ ସ୍ୱାର୍ଥରେ ବ୍ୟବହାର କରିଥାଏ
ପୁଞ୍ଜିବାଦ।
ପୁଞ୍ଜିବାଦୀ ସମାଜ ସୃଷ୍ଟିକରିଥାଏ
ମଣଷ ମନରେ ଧର୍ମ ଭୀରୁତା
ପୁଞ୍ଜିପତି ଓ ଧର୍ମନେତା
ଶୋଷଣମୂଳକ ସମାଜର ଜନ୍ମଦାତା।

ଶୋଷଣମୂଳକ ସମାଜ ଯେଉଁଠି ନାହିଁ
ଧର୍ମ ସେଠାରେ ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ରହି
ଆସ୍ତେ ଆସ୍ତେ ମଉଳି ଯିବ;
ସମତାପୂର୍ଣ୍ଣ ସମାଜରେ ଧର୍ମର ଉଚ୍ଛେଦ ଘଟିବ
ଧର୍ମ ମାଧ୍ୟମରେ ରାଜନୀତିର ଅଂଶଗ୍ରହଣ
ଗଳାବାଟ ଦେଇ ଅନୁପ୍ରବେଶ ସମ ।
ଭାଗ୍ୟ ଭଗବାନ ହୀନ ସମାଜ
ମାନବତାବାଦର ପରିକଳ୍ପନା
ମଣିଷର ଅସଲ ଧର୍ମ
ଯୌଥ ସଂପତ୍ତି ଭିତ୍ତିକ
ମାନବତାବାଦୀ ଯୋଜନା ।
ରାଜନୀତି ନୀତିଗତ ଭାବରେ
ଧର୍ମର ଉର୍ଦ୍ଧ୍ୱରେ ରହୁ
ରାଜନୈତିକ ବିପ୍ଳବ ମାଧ୍ୟମରେ
ସମାଜରୁ ବୈଷମ୍ୟ ଓ ଶୋଷଣ ଲୋପପାଉ ।
ମାନବତାବାଦରେ ଧର୍ମୀୟ ଅସହିଷ୍ଣୁତା
ଓ ଧର୍ମୀୟ ମତାନ୍ଧତାର ସ୍ଥାନନାହିଁ
ମାନବତା ବାଦରେ ହିନ୍ଦୁ, ମୁସଲମାନ
ଶିଖ, ଇସାଇ-ଭାଇ ଭାଇ ।
ଧର୍ମକୁ ନେଇ ରାଜନୈତିକ ବେପାରୀ ମାନଙ୍କର
ବେପାର ବନ୍ଦ ହେଉ
ଧର୍ମ ବଦଳରେ ଅର୍ଥନୈତିକ ଓ ସାମାଜିକ ମୁକ୍ତିର ପ୍ରଶ୍ନ
ରାଜନୀତିରେ ସ୍ଥାନପାଉ ।

❑❑❑

# ନାରୀ ବନ୍ଧନରୁ ମୁକ୍ତି ଯାଏଁ

ନାରୀ ନିଜ ଇଚ୍ଛାରେ ବଂଚି ପାରେନା
ନିଜର ବୋଲି ଯାହାକୁ ଭାବେ, ତାଙ୍କୁ
ସହଜରେ ନିଜର କରିପାରେନା ।
ପୁରୁଷ କିନ୍ତୁ ଆପାତତଃ ମୁକ୍ତ
ସାମାଜିକ ପକ୍ଷପାତତା ହେତୁ
ପୁରୁଷ ପାଇଁ ପ୍ରଦତ୍ତ ହୁଏ ଅମୃତ
ନାରୀ ପାଇଁ ବିଷ ।
ଯେତେ ପାପ କଲେବି
ଦୋଷ ଧରାଯାଏନା ପୁରୁଷର
ଯେମିତି ରାଜାର;
ପୁରୁଷକୁ ମିଳେ ଫୁଲମାଳ ଓ ପୁରସ୍କାର
'ବୀର ଭୋଗ୍ୟା ବସୁନ୍ଧରା'ର ଜଗତରେ
ପୁରୁଷ 'ବୀର'
ନାରୀ ନିଜ ଇଚ୍ଛାରେ କାହାସହ
ମିଳିତ ହେବାକୁ ଚାହେଁଲେ
ନିଜେ ଭଲ ପାଉଥିବା ମଣିଷଟିକୁ
ନିକଟରେ ପାଇବାକୁ ହେଲେ
ରଚିବାକୁ ପଡ଼େ ତାକୁ ଗୋପନ ଅଭିସାର
ନତୁବା ସାହାରା ନେବାକୁ ହୁଏ ପୁରୋହିତର
ଖୋଲିବାକୁ ହୁଏ ବୈବାହିକ ସଂପର୍କର ଦ୍ୱାର ।

ବିବାହ ପୂର୍ବ-ବିବାହ ପର ନାରୀ ସଂପର୍କ
ପୁରୁଷ ପାଇଁ ପୌରୁଷତ୍ୱର ନମୁନା
ଯେଉଁ ସଂପର୍କର ପ୍ରତିପକ୍ଷ ଭାବରେ
ନାରୀକୁ ସହିବାକୁ ହୋଇଥାଏ ଗଞ୍ଜଣା ।
ନାରୀ ମୁକ୍ତ ନୁହଁ ବୋଲି ତା' ପାଇଁ ମୁକ୍ତି ଲୋଡ଼ା
ସେଥିପାଇଁ ତାକୁ ତିଆରି କରିବାକୁ ହେବ
ନାରୀ ମୁକ୍ତିର ଖସଡ଼ା-
ଯାହା ମାନବ ମୁକ୍ତି ସହ ଜୋଡା ।
ମାନବ ମୁକ୍ତିର ରାସ୍ତାରେ ଯିବାକୁ ହେଲେ
ନାରୀକୁ ବାଛି ନେବାକୁ ହେବ ପଥ ସଂଘର୍ଷର
ଗଢ଼ିବାକୁ ହେବ ବ୍ୟବସ୍ଥା ମୁକ୍ତ ମାନବତାର
ଫିଟାଇବାକୁ ହେବ ରାସ୍ତା ବନ୍ଧନରୁ ମୁକ୍ତିର ।



# ସମତାପୂର୍ଣ୍ଣ ସମାଜ ଦିଶାରେ

॥୧॥

ନାରୀ ନାୟକ ହୋଇ ପାରେନା, ହୁଏ ନାୟିକା
ପୁରୁଷ ପ୍ରଧାନ ସମାଜରେ ନାରୀଧର୍ମର ଦୀକ୍ଷା
ପୁରୁଷର ପୂଜା ପାଇଁ ଉଦ୍ଦିଷ୍ଟ;
ନାରୀ ପାଇଁ ପୁରୁଷ ପ୍ରଭୂ ଓ ଗୋସାଇଁ
ପୁରୁଷ ପ୍ରଧାନ ସମାଜରେ ନାରୀ
ପୁରୁଷର ଦାସୀ ହୋଇ
ରହିଯାଏ ଚିରକାଳ;
ପୁରୁଷ ପ୍ରଧାନ ସମାଜରେ ପୁରୁଷ
ବିଧବା ହୁଏ ନାହିଁ
ସିନ୍ଦୁର ପୋଛେ ନାହିଁ, କାଚ ଭାଙ୍ଗେ ନାହିଁ
ପୁରୁଷ ସ୍ୱାମୀ ହୋଇ ରହେ ଚିରକାଳ
ସଧବା ବିଧବା ନାରୀର ।
ନାରୀର କୋମଳତା ପୌରୁଷତ୍ୱର ଆଧାର ବନେନା
ନାରୀ କେବେ ହୁଏନା ନାୟକ
ନାୟିକାର ଭୂମିକାରେ ତାକୁ
ହେବାକୁ ପଡେ ସନ୍ତୁଷ୍ଟ;
ଅଧୀନସ୍ଥ ଚେହେରାରେ
ଉପରିସ୍ଥକୁ ସେ କରିଥାଏ କୁର୍ଣ୍ଣିସ
ନାରୀ ସଦା ସର୍ବଦା ପରିଚୟହୀନ ବେଓ୍ୱାରିସ ।

॥୨॥

ଏକବିଂଶ ଶତାବ୍ଦୀରେ ଏବେ
ନାରୀ ହେବ ନାୟକ
ଅଧସ୍ତନ ହେବ ଉପରିସ୍ଥ
ଦଳିତ ଅବତୀର୍ଣ୍ଣ ହେବ
ବ୍ରାହ୍ମଣ ଭୂମିକାରେ
ଖବରକାଗଜରେ ମାଲିକ ହେବ ମୁଦ୍ରାକାର
ଚୋର ମାନଙ୍କର ହାତରୁ ଛଡ଼ାଇ ଅଣାଯିବ
ସରକାର
ସାଧୁମାନେ ହେବେ ଦେଶର ଚାଳକ
ଜେଲ ଭୋଗିବେ ଦୁର୍ନୀତିଗ୍ରସ୍ତ ଲୋକ;
କ୍ଷମତାହୀନ ଲୋକମାନେ ନେଲେ
ଦେଶର ଦାୟିତ୍ୱ
କ୍ଷମତାବାନ୍ ଲୋକମାନଙ୍କର କ୍ଷତି କ'ଣ ?

॥୩॥

ନାରୀମାନେ ହୁଅନ୍ତୁ ନାୟକ
ପୁରୁଷ ମାନେ ହୁଅନ୍ତୁ ନାୟିକା
ପୁରୁଷ ନେଉ ନାରୀର ଭୂମିକା
ନାରୀ ନେଇ ପୁରୁଷର ଭୂମିକା ।
ଅଭିନେତାମାନେ ହୁଅନ୍ତୁ ନାଟ୍ୟକାର
ଦର୍ଶକମାନେ ହୁଅନ୍ତୁ ନିର୍ଦ୍ଦେଶକ ଓ
ସୂତ୍ରଧର
ନାଟକ ବେଶ୍ ଜମିବ
ଦେଶ ସମାଜ ଠିକ୍‌ଭାବେ ଚାଲିବ ।
ନେତାମାନେ ଜନତା
ଜନତା ମାନେ ନେତା
ରାଜାମାନେ ପ୍ରଜା ଓ

ପ୍ରଜାମାନେ ରାଜା ହେଲେ
ପୃଥିବୀ ସତକୁସତ ବଦଳି ଯିବ।

।।୪।।
କଥା ହେଲା ନାରୀମାନେ କେଉଁଦିନ
ନାୟକ ହେବେ
ପ୍ରଜାମାନେ କେବେ ରାଜା ପାଲଟିବେ
ଜନତାମାନେ କେବେ ନେତା ହେବେ ?
ସମୟ ଏବେ ଦାବି କଲାଣି ତାହା
ଆଜି ନହେଲେ ବି କାଲି ଘଟିବ ଏହା;
ସର୍ବହରା ହେବନି ପୁଞ୍ଜିପତି
ପୁଞ୍ଜିପତି ହେବ ସର୍ବହରା
ଦୁନିଆର ୯୯ ଭାଗ ଦ୍ୱାରା / ବିଶ୍ୱ ଗଣତନ୍ତ୍ର ନିର୍ମାଣର
ଦାବି ଓ ଚେହେରା
ଦେଖିବାକୁ ମିଳିଲାଣି ଏଇ ପୃଥିବୀରେ।

।।୫।।
ପୁରୁଷ ଓ ପୁଞ୍ଜିପତିମାନେ
ନାୟକର ଭୂମିକା ତ୍ୟାଗକର
ବିଶ୍ୱରେ ବୈଷମ୍ୟ ଓ ଶୋଷଣ
ଦୂର କରିବା ପାଇଁ
ଆବଶ୍ୟକ ନେତୃତ୍ୱ ଜନଗଣର,
ନାରୀ ପୁରୁଷ ନିର୍ବିଶେଷରେ
ବ୍ରାହ୍ମଣ-ଦଳିତ, ସର୍ବହରା-ପୁଞ୍ଜିପତି
ଧନୀ-ଦରିଦ୍ର, ନେତା-ଜନତା, ରାଜା-ପ୍ରଜା
ଲିଂଗ, ଧର୍ମ, ଦେଶ, ଜାତି ଭାଷାଗତ ବୈଷମ୍ୟ ବିରୁଦ୍ଧରେ
ନେତୃତ୍ୱ ନେଉ ଜନଗଣ
ଜନଗଣର ଶାସନ ହିଁ ଦୂର କରିବ ବୈଷମ୍ୟ;

ବୈଷମ୍ୟହୀନ ପୃଥିବୀରେ ପୁରୁଷ ହେବନି ନାୟକ
ପୃଥିବୀରୁ ଲୋପ ପାଇବ ବୁଦ୍ଧିମାନ ଲୋକଙ୍କର
ଚତୁର ନେତୃତ୍ୱ
ଦୂର ହେବ ଦେଶ ଭିତରୁ ଦୁଷ୍ଟବୁଦ୍ଧି ପ୍ରେରିତ
ବିଭେଦକାରୀ ତତ୍ତ୍ୱ
ନଷ୍ଟ ହେବ ପୁଞ୍ଜିତନ୍ତ୍ର ଓ ପୁରୁଷତନ୍ତ୍ର ରୂପୀ ଯନ୍ତ୍ର
ଯାହାର ବିକଳ୍ପ
ବିଶ୍ୱ ଗଣତନ୍ତ୍ର
ତାହା ଆଜି ନ ହେଲେ ବି
କାଲି ହେବ ବାସ୍ତବାୟିତ ।।

❑❑❑

## ଶବ୍ଦ ସଂପର୍କ

ଶବ୍ଦ ହିଁ କରିପାରେ
ରକ୍ତ ମାଂସର ମଣିଷକୁ
ଜୀବଂତ
ଜୀବଂତ ଶବ୍ଦମାନଙ୍କ ଦ୍ୱାରା
ରକ୍ତ ମାଂସର ମଣିଷ
ହୁଏ ଗୁଦ୍ଧିମନ୍ତ ।
ଶବ୍ଦ ମାନଙ୍କୁ ନେଇ
ସୃଷ୍ଟିଶୀଳ ହେବା ସକାଶେ
ମାଧ୍ୟମଟିଏ ଲୋଡ଼ା
ଶବଦ୍ ମାନଙ୍କ ଜରିଆରେ
ଗଢ଼ଯାଇପାରେ
ପ୍ରେମ ମୁକ୍ତିର ଖସଡ଼ା ।
ଶବ୍ଦ ହିଁ ଯୋଗାଇଦିଏ ମଣିଷକୁ
ଭଲ ପାଇବାର ଭାଷା
ଶବ୍ଦ ହିଁ ସୃଷ୍ଟି କରେ ମଣିଷ ମନରେ
ବ୍ୟକ୍ତି ସ୍ୱାତନ୍ତ୍ର ବୋଧ ଓ
ସ୍ୱାଧୀନତାର ଜିଜ୍ଞାସା ।
ଶବ୍ଦମାନଙ୍କୁ ନେଇ ମୁଁ ଯେତେବେଳେ
ପ୍ରେମ ଆଉ ବିପ୍ଲବର ବହ୍ନି
ଜାଗ୍ରତ କରିବାକୁ ଚାହେଁ

ତମେ ସେତେବେଳେ ସାଥୀଟିଏ ହୋଇ
ମୋ ସମ୍ମୁଖରେ ଉଭା ହୁଅ
ମୋ ସହିତ ଯୋଡ଼ିଦଅ ନିଜକୁ
ପ୍ରେରଣାଦାୟୀ ଭୂମିକାରେ
ମୁଁ କବିତା ଲେଖେ ତମଠୁ ପ୍ରେରଣା ପାଇ
ଶବ୍‌ଦମାନଙ୍କୁ ନେଇ
ଓ ଶେଷରେ କରେ ନିଜକୁ ଉଚ୍ଚକିତ
ତମ ସହ ସଂପର୍କ ମାଧ୍ୟମରେ
ଜୀବନ ମୋର ହୁଏ ଜୀବନ୍ତ
ଜୀବନ୍ତ ଶବ୍‌ଦମାନେଇ ହୋଇଯାନ୍ତି
ଆମପାଇଁ ସ୍ନେହ ପ୍ରେମ ଭଲ ପାଇବାର ସୂତ୍ର।
ବିରହ, ମିଳନ, ବିପ୍ଳବ, ହସ, କାନ୍ଦ ସବୁଠି
ଶବ୍‌ଦମାନଙ୍କ ଜରିଆରେ
ଆମର ହୁଏ ସାକ୍ଷାତ
ଶବ୍‌ଦମାନେଇ ଆମ ଉଭୟଙ୍କ କାନରେ
ଫୁଙ୍କି ଦିଅନ୍ତି ମୁକ୍ତିମଂତ୍ର ।
ଶବ୍‌ଦ ହିଁ ଆମ ଉଭୟଙ୍କୁ ଦେଖାଇ ଦିଅନ୍ତି
ବଂଚିବାର ବାଟ
ଜୀବନର ଅର୍ଥ ।
ଶବ୍‌ଦ ଥିବାଯାଏ ଆମେ ଉଭୟେ
କବିତା ମାଧ୍ୟମରେ ସଂପର୍କାନ୍ୱିତ
ହୋଇଚାଲିଥିବା ଚିରକାଳ
ବର୍ତ୍ତମାନରୁ ଭବିଷ୍ୟତ
କାଳରୁ କାଳାତୀତ।

❑❑❑

# ମାଟି ମଣିଷ

ଆକାଶର ସାମିଆନା ତଳେ
ଦିଗ୍‌ବଳୟର ପଥ-ପ୍ରାଂତରେ
ମାଟି -ମଣିଷର ସଂପର୍କ ଯୋଡ଼ି ହୋଇଯାଏ
ମଣିଷ ମାଟିକୁ ଭଲପାଏ
ମାଟି ମଣିଷକୁ...।
ମଣିଷକୁ ଏବେ ସଂପତ୍ତି ଲୋଭ ଗ୍ରାସ କରିଛି
ସେ ମାଟି ମା'ର ଛାତି ବିଦାରୁଛି ।
ଦେଶ ଆଜି ବିଭକ୍ତ
ସଂତାନ-ମାନେ ପକ୍ଷଭୁକ୍ତ
ଶୋଷକ ଶୋଷିତ
ଶାସକ ଶାସିତ;
ଉଭୟଂକ ଭିତରେ ମାଟିକୁ ନେଇ ଚାଲିଛି ଲଢ଼େଇ;
ମାଟି ଉପରେ ଅଧିକାର ପାଇଁ
ଏଠି ସେଠି ସବୁଠି
ସିଙ୍ଗୁରରୁ ନନ୍ଦିଗ୍ରାମ, ଢିଙ୍କିଆ
ବାଲିତୁଠ, ଭଟ୍ଟା ପାର୍ଶଲ
ସର୍ବତ୍ର ମଣିଷ ସଂଘର୍ଷ କରୁଛି
ମାଟି ଉପରେ ଅଧିକାର ପାଇଁ ।
ମାଟି ଉପରେ ଅଧିକାର ଜାହିର କରୁଛନ୍ତି
ଅଞ୍ଚଳ-ବାସୀ ମଣିଷମାନେ

ଯୁଗ ଯୁଗର ସଂପର୍କମାଟି ସହିତ ସେମାନଙ୍କର
ଖଟିଖିଆ ମଣିଷର
ଖଟିଖିଆ ମଣିଷ ମାନଙ୍କ ହାତରୁ
କିଏ ଛଡାଇ ନେବ ତାର ଅଧିକାର ?
ସରକାର କହୁଛି-ବିକାଶ ପାଇଁ ମାଟିଲୋଡ଼ା
ଏକବିଂଶ ଶତାବ୍ଦୀରେ
ଧାନ, ପାନ, ମୀନର ମୂଲ୍ୟ ନାହିଁ;
ଏକବିଂଶ ଶତାବ୍ଦୀର ମଣିଷ ହୋଇ
ବିକାଶକୁ ବିରୋଧ କରିବା ଅର୍ଥ 'ଦେଶଦ୍ରୋହ';
ପ୍ରକଳ୍ପ ଅଂଚଳରୁ ହଟିଯାଅ
ରେଡ୍ ଆଲର୍ଟ ଜାରି ହୋଇଛି
ଆବଶ୍ୟକ ହେଲେ ଗୁଳି ଫୁଟିବ
କ୍ଷୟ କ୍ଷତି ପାଇଁ ବିସ୍ଥାପନ-ବିରୋଧୀ ମଂଚର
ସଦସ୍ୟା ମାନେ-ଦାୟୀ ରହିବ;
କ୍ଷତି-ପୂରଣ ଟଙ୍କା ନେଇ ଚୁପ୍ ରୁହ
ନହେଲେ ଗୁଳି, ଗୋଳା, ବଂଧୁକର
ସମ୍ମୁଖୀନ ହୁଅ ।
ବିରୋଧ ଏକ ବାମପନ୍ଥୀ ରୋଗ
ବେଳେ ବେଳେ ଏମାନଙ୍କୁ ମିଳିଯାଏ
ଦକ୍ଷିଣ ପନ୍ଥୀଙ୍କ ସହଯୋଗ;
ଅଭୟ ଓ ଲିଙ୍ଗରାଜ
ସରକାରଙ୍କର ଅମାନିଆ ପିଲା
ଗାନ୍ଧୀବାଦୀ କମ୍ୟୁନିଷ୍ଟମାନେ
ବିକାଶକୁ ବିରୋଧ କଲାବାଲା
ଏମାନଙ୍କ ଭିତରେ ଅଛି ଗାଁଠ୍ ଗାଁଠ୍ ।
ସରକାର କହୁଛି " ମାନଙ୍କୁ ଜବଦ
କରାଯାଇ-ପାରିବ
ପୋଲିସ-ବାହିନୀର ମଦଦ୍ ନିଆଯିବ

ଭଲରେ ହେଉ କି ଭେଲରେ ହେଉ
ନିକଟ ଭବିଷ୍ୟତରେ ସବୁ ସମସ୍ୟାର
ସମାଧାନ ହେବ ।”
ସରକାରକୁ ସଂପତ୍ତି ଲୋଭ ଗ୍ରାସ କରିଛି
ସଂପ୍ରତି ଦେଶରେ
ଦ୍ରୋହ କାଳର ସ୍ଥିତି; ଏପରି ସ୍ଥିତିରେ
ପବନ କହୁଛି ସେ ଅନଂତ ଆକାଶରେ ମିଳାଇ ଯିବ
ପାଣି କହୁଛି ସେ ପାତାଳ ମଗ୍ନ ହେବ
ମଣିଷର ଅତିପ୍ରିୟ ଆପଣାର ମାଟି
ଶୁଖି ଫାଟିଯିବ;
ପ୍ରକୃତି ଯେ ନିଷ୍ଠୁର ଓ ଭୟଙ୍କର ହେବ
ସର୍କାର ଓ ସନ୍ତାନମାନେ
କରିବେ ବା କ’ଣ ?
ଆକାଶର ସାମିଆନା ତଳେ
ଦିଗ୍‌ବଳୟର ପଥପ୍ରାନ୍ତରେ
ମାଟି ମଣିଷର ସଂପର୍କକୁ ନେଇ
ମଣିଷ ଆଜି ସନ୍ଦିଗ୍ଧ
ଭବିଷ୍ୟତରେ ମାଟି ସହ ମଣିଷର ସଂପର୍କ
କଣ ଯେ ହେବ
କିଏ ବା କହିବ ??

❑❑❑

# ନିଃସଙ୍ଗତା ସମୟ ଓ ସମ୍ପର୍କ

ନିଜର ବୋଲି କାହାକୁ
ସାହାସ କୁଲାଉନାହିଁ କହିବାକୁ
କାରଣ, ଆଜି ଯେ ନିଜର
କାଲି ସେ ତ ହୋଇ ଯାଉଛି ପର
ଆମେ ବଂଚୁଥିବା ସମୟଟା ଏକା
ଦ୍ରୋହ କାଳ ।
ଏଠି ଏକୁଟିଆ ଜୀବନ ଜୀଇଁବା
ସତେ ଯେମିତି ଆମର ନିୟତି
ସମୟର ରଥ-ଚକ ଗଡ଼ି ଚାଲିଛି ।
ଜୀବନ ସଂପର୍କରେ ଅଧିକ ଆଶାବାଦୀ ମଣିଷଟି
ହୁଏତ କହିପାରେ ସେ ଏକୁଟିଆ କି ନା
କିନ୍ତୁ ବାସ୍ତବତା ଯାହା
ବେଶ କିଛି ତ୍ୟାଗ ଓ ସଂଘର୍ଷ ପରେ
ସାଥୀଦ୍ୱର ହାତ ବଢ଼ାଇଲେ ବି
ମଣିଷ ଏକୁଟିଆ ।
ଏବେ ମଣିଷ ମାନେ ମାତିଛନ୍ତି 'ହୋ'ରେ
ନିଜ ନିଜର ମତଲବରେ
ସଂପ୍ରତି ମଣିଷ ମାନେଙ୍କ ମତଲବ୍

ବିନା ମତଲବ୍‌ର ମଣିଷ 'ମହାପୁରୁଷ'।
ନିଜର ବୋଲି ଆମେ ଯାହାକୁ ଭାବୁ
ସେ କରୁଥାଏ ନିଜର ହେବାର ଅଭିନୟ
ବ୍ୟକ୍ତିସ୍ୱାର୍ଥ ବିଜଡ଼ିତ ଦୁନିଆରେ
ମଣିଷର ସ୍ଥିତି ଅସହ୍ୟ;
ପରିସ୍ଥିତିକୁ ବଦଳାଇବା ପାଇଁ
ବିଦ୍ରୋହ କଲେ, ଗୁଳି
ଝୁଲାଇ ଦିଆଯିବ ଫାଶୀ ଖୁଣ୍ଟରେ
ବନାଇ ଦିଆଯିବ ତୁମକୁ ପାଳଭୂତ;
ଏହାପରେ ତୁମେ ଫସଲ ଜଗିବ
ସେମାନେ ହେବେ ଫସଲର ମାଲିକ।
ସଂପର୍କରେ କିଏ ନିଜର କିଏ ପର
ସ୍ୱାର୍ଥର କଷଟିରେ ତାହା ହେବ ନିରୂପିତ
ଏପରି ସ୍ଥିତିରେ ମଣିଷ ଯେ ଅସହାୟ
ଏକୁଟିଆପଣରେ ଆଉଟି ପାଉଟି ହେଉଥିବା ମଣିଷର
ଫଂଜରା ଦୋହଲାଇ ବାହାରି ଆସୁଛି ଦୀର୍ଘଶ୍ୱାସ
ଦୁଃଖ ଯନ୍ତ୍ରଣାର ଉଲଂଗ ହାଓ୍ୱାରେ
ଭାଙ୍ଗି ପଡୁଛି ବିଶ୍ୱାସରେ ଗଛ ଡାଳ
ଝରି ପଡୁଛି ଆଶା ଭରସାର ଫୁଲ କଢ଼।
ଏବେ 'ନା', 'ନା'ର ଜଗତରେ
ତଣ୍ଟି ପାଖରେ ଅଟକି ଯାଇଛି 'ହଁ'
ଚାରିଆଡ଼େ ଖାଲି 'ନା', 'ନା' ଆବାଜ
ନିଜର ବୋଲି କାହାକୁ କହିବାକୁ
ସାହସ ହେଉନି।
ଏ ସବୁ ସତ୍ତ୍ୱେ ଚରମ ହତାଶ ମଧ୍ୟରେ ମଣିଷ ଆଶାବାଦୀ
ଶୁଣିବାକୁ ଚାହୁଁଛି ସ୍ନେହ ପ୍ରେମର ଗୀତ
ଯାହାକୁ ଆହ୍ଲାଦିତ କରିଛି ଦ୍ରୋହକାଳ।

❑❑❑

# ଗାନ୍ଧୀ ତମେ ଜନତାକୁ ବନାଅ ନେତା

ବିଦେଶରେ ଗାନ୍ଧୀବାଦ ମଣିଷର ମନକୁ ଛୁଇଁଛି
ଅଥଚ ସ୍ୱଦେଶରେ ଗାନ୍ଧୀବାଦ ଅଚଳ ହୋଇ ଯାଇଛି
ଏଠାରେ ଅହିଂସା ବଦଳରେ ହିଂସା ହୋଇଛି ରାଜନୀତିର ମୂଳମନ୍ତ୍ର
ଏଠି ଶକୁନି ଓ କୌରବ ମାନଙ୍କର ଚାଲିଛି ନାଟ।
ଗାନ୍ଧୀଙ୍କ ଦେଶରେ ଗାନ୍ଧୀ ମରିଯାଇଛନ୍ତି
କେବଳ ଭୋଟ ଭିକାରୀ ନେତାମାନଙ୍କୁ
ଗାନ୍ଧୀ ବେଳେବେଳେ ମନେ ପଡନ୍ତି;
ଏଠି ରାଜନୀତିର ଆଦର୍ଶ ନୁହଁ ସତ୍ୟ ଓ ଅହିଂସା
ଏଠି ରାଜନୀତିର ଆଦର୍ଶ ହୋଇଛି ଦୁର୍ନୀତି ଓ ହିଂସା
ଅର୍ଥ ଉପାର୍ଜନର ବେଉସା।
ଏକଦା ଗାନ୍ଧୀଙ୍କର ସାମ୍ୟବାଦ ଥିଲା ଗ୍ରାମ ସ୍ୱରାଜ
ଏବେ ଗାଁ ଗହଳିରେ ଚାଲିଛି ସରକାରୀ ସଂପତ୍ତିର ଲୁଟ ଓ ଗୁଣ୍ଡାରାଜ;
ଗାନ୍ଧୀ ମରିଯାଇଛନ୍ତି ତାହା କେଉଁ ନାଥୁରାମର ଗୁଳିରେ ନୁହଁ
ସାମ୍ପ୍ରତିକ ରାଜନୀତିରେ ଚାଲିଥିବା
ଦୁର୍ନୀତି, ମିଥ୍ୟାଚାର ଓ ରାଜନୈତିକ ହିଂସାର ଶିକାର ହୋଇ।
ଅସଲରେ ଗାନ୍ଧୀବାଦର ପ୍ରଭାବ ନାହିଁ ଏ ଦେଶରେ
ଏବେ ଆମେ ଗାନ୍ଧୀଙ୍କୁ ମାରିଚାଲିଛନ୍ତି ଆମ ସଂସ୍କାରରେ
ପ୍ରତି ମୁହୂର୍ତ୍ତରେ; ରାସ୍ତାଘାଟ, ଗାଁ-ଗଣ୍ଡା, ସହର-ବଜାରେ
ହିଂସା ଆଉ ଘୃଣାକୁ ସାମାଜିକ ସଂପର୍କ ଓ ରାଜନୀତିର
ଅଂଶବିଶେଷ କଲାବେଳେ।

ଏହା କିପରି ହୋଇଛି ବା ହେଲା
ଏ ପ୍ରଶ୍ନ କେହି କାହାକୁ କରୁ ନାହାଁନ୍ତି
ସମସ୍ତେତ ମଦ୍‌ଗୁଲ ଆତ୍ମ ସ୍ୱାର୍ଥରେ
ଦେଶକଥା ଭାବିବାକୁ କାହାକୁ ବା ସମୟ ଅଛି ?
ଏବେ ଦାରିଦ୍ର୍ୟ ବିରୁଦ୍ଧରେ ଲଢ଼ିବାକୁ
ଆଣ୍ଠୁଲୁଗ୍ଗ ଲୁଗା ପିନ୍ଧିବା ଦରକାର ନାହିଁ
ଏବେ ତ ସମସ୍ତେ ଉଲଗ୍ନ ଓ
ଉଲଗ୍ନ ନାଚ କରୁଛନ୍ତି ମହା ଉଲ୍ଲାସରେ
ଆତ୍ମ ସ୍ୱାର୍ଥରେ ଜଡ଼ିତ ହୋଇ ।
ଏସବୁ ଦେଖିଲା ପରେ କହିବାକୁ ଇଚ୍ଛା ହେଉଛି
ଗାନ୍ଧୀ ତମେ ଆଉଥରେ ଜନ୍ମନିଅ ଏଇ ପୃଥିବୀରେ
ହିଂସାକୁ ସାବାଡ଼ କର ଅହିଂସା ମାର୍ଗରେ
ଜନତାଙ୍କୁ ଜାଗ୍ରତ କରାଅ ବ୍ୟକ୍ତି ସ୍ୱାର୍ଥର ବିରୁଦ୍ଧରେ ।
ଏବେ କୋଟି କୋଟି ଲୋକଙ୍କର ଅହିଂସା ରୂପୀ ହିଂସାର ପ୍ରୟୋଗରେ
ଦୁନିଆ ବଦଳିବ
ଏହାର ସୂଚନା ମିଳିଲାଣି ବିଶ୍ୱରେ
"ୱାଲଷ୍ଟ୍ରୀଟ ପ୍ରତିବାଦ" ଓ "ଆରବ ବସଂତ' ମାଧମରେ ।
ଏତିକିବେଳେ ଗାନ୍ଧୀ ତମେ ନବଜନ୍ମ ନେଇ
ନେତା ନ ହୋଇ ଜନତାକୁ ବନାଅ ନେତା
ନେତା ମାନଙ୍କ କବଳରୁ ବଞ୍ଚାଅ ଏ ପୃଥିବୀକୁ
ଯାହା ହେବ ତମ ଆଦର୍ଶର ପରିବର୍ଦ୍ଧିତ ଅନୁଚିନ୍ତା ।"

❑❑❑

# ଶବ୍ଦ ବିକ୍ଷୋଭ

ଶବ୍‌ଦ ମାନେ ଏବେ ବିକ୍ଷୋଭ ପାଇଁ ପ୍ରସ୍ତୁତ ହେଲେଣି
ସେମାନେ ଘୋଷଣା କଲେଣି ୯୯ ଭାଗ ସପକ୍ଷରେ ଯିବାକୁ
ସେମାନେ କହିଲେଣି "ଆମେ ୧ ଭାଗ ପାଇଁ କାମ କରିବାକୁ ବାଧ ନୋହୁଁ
ଯଦି ୯୯ ଭାଗ ଲଢ଼ିବାକୁ ପ୍ରସ୍ତୁତ ଆମେ ୯୯ ଭାଗ ସପକ୍ଷରେ ଯିବୁ
ଓ ୯୯ଭାଗ ନିର୍ଦ୍ଦେଶରେ କାମ କରିବୁ, ୧ ଭାଗ ବିପକ୍ଷରେ ।
ଶବ୍‌ଦମାନେ କହୁଛନ୍ତି ୧ ଭାଗ ଲୋକ ୯୯ ଭାଗକୁ ଶୋଷଣ କରୁଛି
ଆମରି ସାହାରାରେ
ଅକ୍ଷରକୁ ଅକ୍ଷରରେ ଯୋଡ଼ି ସଂପୂର୍ଣ୍ଣ ମିଥ୍ୟା ବାଣ୍ଟୁଛନ୍ତି
ଆମରି ମାଧ୍ୟମରେ ।
୯୯ ଭାଗ ଏତେ ସରଳ ନିରୀହ ଯେ, ୧ ଭାଗ ଲୋକ ଯାହା କହନ୍ତି
ସେମାନେ ତାକୁ ବିଶ୍ୱାସ କରିଯାନ୍ତି
ସେମାନେ କଥା କହି ଶିଖି ନାହାନ୍ତି ନିଜ ସପକ୍ଷରେ ।
ଅବଶ୍ୟ ବିଶ୍ୱର କିଛି ପ୍ରାନ୍ତରେ ୯୯ ଭାଗ ନିଜ ସପକ୍ଷରେ କଥା କହିବା
ଆରମ୍ଭ କଲାଣି
ଶବ୍‌ଦର ସାହାରାରେ ସେମାନେ ଆବାଜ ଉଠାଇଲେଣି ୧ ଭାଗ ବିରୁଦ୍ଧରେ;
ଶବ୍‌ଦମାନେ ସିଦ୍ଧାନ୍ତ ନେଇଛନ୍ତି ଏ ବାବଦରେ ୯୯ ଭାଗକୁ
ଭରପୁର ସହଯୋଗ ଦେବାକୁ ।
ପୃଥିବୀରେ ଚଳିବନି ଆଉ ୧ ଭାଗର ରାଜ
୯୯ ବିରୁଦ୍ଧରେ ୧ ଭାଗର ଛଳନା ଓ ପ୍ରବଚନାର ଅକ୍ଷର ରୂପୀ ବୋଝ
ବୋହି ବୋହି ଶବ୍‌ଦ ମାନେ କ୍ଳାନ୍ତ

ସେମାନେ କହୁଛନ୍ତି ୯୯ଭାଗ ତୁମେ ଉଠ ଜାଗ ହୁଅ ଶକ୍ତ
ଆମେ ତୁମକୁ ସାଥ ଦେବୁ ଓ ୧ଭାଗ ଲୋକଙ୍କୁ ପାନେ ଚଖାଇବୁ
୧ଭାଗ ଲୋକ ଯାହା କଲେଣି; ଲଢିବ ଯୁଦ୍ଧ
ଅଣୁ ଯୁଦ୍ଧ ଅଥବା ଜାଗତିକ ଉତ୍ତାପ କାରଣରୁ
ପୃଥିବୀ ଲୋପ ପାଇଯିବ;
ଶବ୍ଦମାନେ ଭୀଷଣ ରାଗୁଛନ୍ତି; ସେମାନେ ଦେଖୁଛନ୍ତି ତାଙ୍କ ମାଧମରେ
ଚାଲିଛି ମଣିଷ ଉପରେ ମଣିଷର ଶୋଷଣ
ସବୁ ଜାଣି ପାରୁଥିବା ବୁଝିପାରୁଥିବା ବିଚାରବନ୍ତ ଶବ୍ଦଗଣ
ନିଜ ଆଖି ଆଗରେ ଦେଖି ମାନବର କଷଣ ସହନ୍ତେ ବା କିପରି ?
ଶବ୍ଦମାନେ ନିଜ ଆଖି ଆଗରେ ଦେଖୁଛନ୍ତି
୯୯ ଭାଗକୁ ଭାଗଭାଗ କରି ପୃଥିବୀରେ ଚାଲିଛି ୧ ଭାଗର ଶାସନ
ସେଥିପାଇଁ ୯୯ଭାଗକୁ କଟାଇବାକୁ ହେଉଛି
ଅଭାବ ଓ ଅନିଶ୍ଚୟତାର ଜୀବନ;
ବିଶ୍ୱବ୍ୟାପୀ ପୁଞ୍ଜିବାଦର ନଗ୍ନ ଶୋଷଣ
୯୯ ଭାଗ ଏ ବାବଦରେ କେବେ ହେବ ସଚେତନ ?
ଏଇ ପ୍ରଶ୍ନ ଶବ୍ଦମାନଙ୍କୁ ଆନ୍ଦୋଳିତ କରୁଛି
୯୯ ଭାଗର ନିରବତା ସେମାନଙ୍କୁ ବିରକ୍ତ-ବୋଧ ହେଉଛି ।
ଶବ୍ଦମାନେ କହୁଛନ୍ତି, ଧର୍ମ ଓ ଜାତି ନାଁରେ
୯୯ଭାଗକୁ ଭାଗ ଭାଗ କରି ୧ ଭାଗ ଲୋକ ଭିଆଇଛନ୍ତି
ସାଂପ୍ରଦାୟିକ ଦଙ୍ଗା
ତୀବ୍ର କ୍ଷମତା ଲୋଭର ନିଶା ସେମାନଙ୍କୁ କରିଛି ଅନ୍ଧ ।
ଶବ୍ଦମାନେ ପ୍ରତିବାଦ କରୁଛନ୍ତି ଓ କହୁଛନ୍ତି, ଧର୍ମ ଓ ଜାତି ନାଁରେ
୧ ଭାଗ ଲୋକ କରୁଛନ୍ତି ଆମର ଅପବ୍ୟବହାର
୧ ଭାଗ ଲୋକଙ୍କ ହାତରେ ଧରାଦେଇ ଆମେ ହେଇଛୁ ହରବର
ଆମକୁ ମାଧମ କରି ସେମାନେ କହୁଛନ୍ତି ଆମେ କାଳେ ବ୍ରହ୍ମ ଓ ଈଶ୍ୱର;
ଏସବୁ ନିରୋଳା ବକ୍‌ବାଜ୍ ।
ଦଂଗାକାରୀମାନେ ଦଂଗା ଭିଆଇଲା ବେଳେ ନେଉଛନ୍ତି ଆମରି ସାହାରା
ଭୋଟ ବେପାରୀ ମାନେ ନିର୍ବାଚନ ଜିତୁଛନ୍ତି ଆମରି ଦ୍ୱାରା

ଭାଗ୍ୟ ଭଗବାନ, ପୁର୍ନଜନ୍ମ-ପର ଜନ୍ମର ପ୍ରଚାର
ସବୁକିଛି ଠକ କାରବାର ଆମରି ସାହାରାରେ;
ଗଣତନ୍ତ୍ରର ରକ୍ଷାକାରୀ ବୋଲି ସେମାନେ ଯାହା କହୁଛନ୍ତି
ସବୁ ଡ଼ାହାମିଛ
ଗଣତନ୍ତ ନାଁରେ ଗଣତନ୍ତ୍ରର ବିଲୋପ
ସବୁକିଛି ୧ ଭାଗର କାମ।
ଶିକ୍ଷାନୁଷ୍ଠାନ, ପ୍ରଶାସନ ଗଣମାଧ୍ୟମ ସବୁକିଛି ସେମାନଙ୍କ ହାତରେ
ଯାହାର ଭରପୁର ଅପବ୍ୟବହାର ସେମାନେ କରୁଛନ୍ତି ଆମରି ସାହାରାରେ ।
ଆଉ ନୁହଁ ବେଶିଦିନ -ଶବ୍‌ଦମାନେ ମାତିଲେଣି
ଶବ୍‌ଦର ସାହାରେ ହେବ ପରିବର୍ତ୍ତନ
୯୯ ଭାଗ ବିପ୍ଳବ ଜରିଆରେ
ଆଗାମୀ ଦିନରେ ପୃଥିବୀରେ ରହିବନି
୯୯ ଭାଗ ଓ ୧ ଭାଗର ବିଭେଦ
ପୃଥିବୀ ହେବ ୧୦୦ଭାଗ ଲୋକଙ୍କର 'ଭୂସ୍ୱର୍ଗ' ।

❑❑❑

## ଲେଖକଙ୍କ ଅନ୍ୟାନ୍ୟ ପୁସ୍ତକ

କବିତା : ଦୁର୍ବାର ଶପଥ
ମୃତ ଈଶ୍ୱର
ଲୋହିତ ଧୂସର
ଧୂସର ସବୁଜ
ନାରୀମୁକ୍ତି ଇସ୍ତାହାର

ଅନୁବାଦ : ମୁଁ କାହିଁକି ନାସ୍ତିକ
ସମାଜବାଦ କାହିଁକି

ପ୍ରବନ୍ଧ : ମାର୍କସବାଦ ଓ ଉତ୍ତର ଆଧୁନିକତାବାଦ
ଆଫଗାନିସ୍ଥାନ ସମସ୍ୟା ସଙ୍କଟ
କାଶ୍ମୀର ସମସ୍ୟା ଓ ତା'ର ସମାଧାନ
ନାଗରୀକତା ପ୍ରସଙ୍ଗ
ମହାପ୍ରଳୟର ପଥେ ପୃଥିବୀ
କରୋନା ପରର ପୃଥିବୀ

ଜୀବନୀ : ଆନ୍ନା ହଜାରେ

ପ୍ରକାଶ ଅପେକ୍ଷାରେ : ଉତ୍ତର ଆଧୁନିକତାବାଦୀ ଦର୍ଶନ ଓ ଦାର୍ଶନିକ



ପ୍ରକାଶକ :

ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ

ମୂଲ୍ୟ : ଏକଶତ ଟଙ୍କା ମାତ୍ର